

# ବିଜ୍ଞାନ ର ଅଭୁଲା କାହାଣୀ

ଡ଼ଃ କୁଳମଣି ସାମଲ

# ବିଜ୍ଞାନର ଅଭୁଲା କାହାଣୀ

ପ୍ରଫେସର, ଡକ୍ଟର **କୁଳମଣି ସାମଲ**



କୋଣାର୍କ ପବ୍ଲିଶର୍ସ
ବିନୋଦବିହାରୀ, କଟକ-୨

**ବିଜ୍ଞାନର ଅଭୁଲା କାହାଣୀ**

ଲେଖକ :
ପ୍ରଫେସର, ଡକ୍ଟର **କୁଳମଣି ସାମଲ**

ପ୍ରକାଶକ :
ଚନ୍ଦ୍ରଶେଖର ପାନ
**କୋଣାର୍କ ପବ୍ଲିଶର୍ସ**
ବିନୋଦ ବିହାରୀ, କଟକ-୨

ପ୍ରଥମ ସଂସ୍କରଣ—୧୯୯୦

ମୁଦ୍ରଣ :
**ଜଗନ୍ନାଥ ପ୍ରିଣ୍ଟର୍ସ**
କଟକ-୧

**ମୂଲ୍ୟ—ଟ ୧୮-୦୦**

# ସୂଚୀପତ୍ର

ପୃଷ୍ଠା





# ସେଇ ହତଭାଗିନୀ ଏକ ଅମ୍ଳାନ ସ୍ମୃତି

## ବସୁଶ୍ରୀ ହୀନକପାଳୀ

ଜନ୍ମ ହୋଇଥିଲେ ମରିବାକୁ ହୁଏ । ମର୍ତ୍ତ୍ୟ ମଣ୍ଡଳେ ଦେହ ବହି, ଦେବତା ହୋଇଲେ ମରଇ । କେହି ଅମର ଲଡ଼ୁ ଖାଇନ । ତଥାପି ମରିବାକୁ କେହି ସୁଖ ପାଏ ନାହିଁ, ପସନ୍ଦ କରେ ନାହିଁ । ଯେତେ ଦହଗଞ୍ଜ ହେଲେ ବି ଜୀବନ ହରେଇବାକୁ ଇଚ୍ଛା ହୁଏନା । ଜୀବର ଜୀବନ ପ୍ରତି ଯେଉଁ ମୋହ, ତାହା ହିଁ ଏ ସୃଷ୍ଟିକୁ ବଞ୍ଚେଇ ରଖିଛି । କେହି ମରିଗଲେ ବା ଦୁରାରୋଗ୍ୟ ରୋଗରେ ପୀଡ଼ିତ ହେଲେ ଆମେ ତାକୁ ସାଧାରଣତଃ ହତଭାଗା ବା ହତଭାଗିନୀ ବୋଲି କହିଥାଉଁ । ଆମେ ବଞ୍ଚିଥିବା ଲୋକେ ତା' ପାଇଁ କେତେ ଆହା ଚୁ ଚୁ କରୁ । ବ୍ୟସ୍ତ ହୋଇ କହୁ—ଆହା ବସୁଶ୍ରୀ ଚାଲିଗଲା, ଜୀବନରେ କେତେ ଦୁଃଖକଷ୍ଟ ଭୋଗିଛି, ଅସଲ ସୁଖ ବେଳକୁ ରହିଲା ନାହିଁ । ସ୍ୱାମୀ ମୁଖ୍ୟମନ୍ତ୍ରୀ ହେଲେ, ପୁଅ ବିଶ୍ୱବିଦ୍ୟାଳୟର ରେକର୍ଡ ଭାଙ୍ଗି ବି ଏସ୍. ସି. ସ୍ୱର୍ଣ୍ଣପଦକ ପାଇଲା, ଝିଅ ବିନା ଯୌତୁକରେ ଆଇ.ଏ.ଏସ୍. ଜ୍ୱାଇଁ ପାଇଲା, କିନ୍ତୁ ବସୁଶ୍ରୀ ହୀନକପାଳୀ । ଏସବୁ ଦେଖିଲା ବେଳକୁ ଆଖି ବୁଜିଲା ଏଭଳି ଶହଶହ ହୀନକପାଳୀ ଇହଧାମରୁ ବିଦାୟ ନେଉଛନ୍ତି । ତାଙ୍କୁ କିଏ ବା ମନେ ରଖୁଛି? ଖୁବ୍ ହେଲେ ଥିଲାବାଲା ପୁଅବୋହୂ ବା ଝିଅଜ୍ୱାଇଁମାନେ ବର୍ଷକୁ ଥରେ ଖବର କାଗଜରେ ତାଙ୍କ ଫଟୋ ଛାପି, ତାଙ୍କୁ ମନେ ପକାଉଛନ୍ତି ବୋଲି ଲେଖିଦେଉଛନ୍ତି । ଏ ପ୍ରବନ୍ଧରେ ସେଭଳି କୌଣସି ଅଭିଜାତ କଥା କୁହାହେଉନି ।

ଯେଉଁ ସଦ୍ୟଜାତ ଶିଶୁଟି ମା'କୋଳ ଶୂନ୍ୟ କରି ଚାଲିଯାଏ, ସେ ତ ପାଣିହାଣ୍ଡି ହୁଏ । କେବଳ ଦଶମାସ ଗର୍ଭଧାରିଣୀ ମା' ଛଡ଼ା ତା ପାଇଁ କିଏ ବା କାନ୍ଦିବ ? ସେ ଯଦି ଝିଅଟିଏ ହୋଇଥାଏ ତାହାହେଲେ ବାପମା, ମୁଣ୍ଡରୁ ବୋଝ ଓହ୍ଲାଇଲା ପରି ମନେ କରନ୍ତି । ଏବେ ଜଣାପଡ଼ୁଛି, ଅଧିକାଂଶ ଶିଶୁକନ୍ୟା ଯେ ମୃତ୍ୟୁମୁଖରେ ପଡ଼ୁଛନ୍ତି ତା'ର ପ୍ରଧାନ କାରଣ—ଲାଳନପାଳନରେ ଅବହେଳା । ଆମ ଦେଶର ଯୌତୁକ ପ୍ରଥା ଏହି ଅବ-

ହେବାର ଏକ ବିଶେଷ କାରଣ । ବାପ ମା'ଙ୍କ ଜାଣତରେ ଅନେକ ଝିଅ ଏପରି ଅବହେଳାର ଶିକାର ହୋଇଥାନ୍ତି । ସେଭଳି ସହସ୍ର ସହସ୍ର ଅଭାଗିନୀ ବିକଶିତ ହେବା ଆଗରୁ ବୃନ୍ତଚ୍ୟୁତ ହୁଅନ୍ତି । ପରିସଂଖ୍ୟାନ ଦୃଷ୍ଟିରୁ ସରକାର ସେମାନଙ୍କର ହିସାବ ରଖିଲେଣି । ଅନ୍ୟ କିଏ ବା ସେମାନଙ୍କୁ ମନେରଖିବ ? ପ୍ରକୃତରେ କ'ଣ ସେମାନେ ଅଭାଗିନୀ ? ବଞ୍ଚିଥିଲେ ହୁଏତ ସେମାନେ ଭାଗ୍ୟବତୀ ହୋଇ ପାରିଥାନ୍ତେ ।

## ତା ନାଁ ହୋଲିରେଫି

କିନ୍ତୁ ଏଠି ଯେଉଁ ଝିଅଟି କଥା କୁହାଯାଉଛି, ସେ ଥିଲା ପ୍ରକୃତରେ ଏକ ଅଭାଗିନୀ । ତା' ଜନ୍ମରୁ ସେ ମୃତ୍ୟୁର ଏକ ନିଶ୍ଚିତ ବାର୍ତ୍ତା ବହନ କରି ଆଣିଥିଲା । ୧୯୮୪ ମସିହା ଜୁଲାଇ ୨୦ରେ ସେ ଜନ୍ମ ହେଲା । ସେତେ-ବେଳକୁ ରାତି ଘ ୧ । ୧୯ । ଜନ୍ମହେଲା ବେଳକୁ ତା'ର ଓଜନ ଥିଲା ୨.୯୫ କେଜି । ମୁଣ୍ଡରେ ବାଳ କଳା ମୁଚୁମୁଚୁ । ତାକୁ ଦେଖି ତା'ର ଅଳ୍ପବୟସ୍କ ବାପମା'ଙ୍କ ମନ ଆନନ୍ଦରେ ଉଲ୍ଲସି ଉଠିଲା । ଖୁସି ହେବା କଥା, କାରଣ ଶିଶୁଟି ଥିଲା ତାଙ୍କର ଏ ସୃଷ୍ଟିକୁ ପ୍ରଥମ ଅବଦାନ । ମାଆ ଜୋନେଟ୍ ରେଫିଙ୍କ ବୟସ ୨୪; ବାପାଙ୍କ ନାମ ଆଣ୍ଟୋନି; ତାଙ୍କ ବୟସ ୨୭ ବର୍ଷ । ପିଲାଟିର ନାଁ କ'ଣ ଦେଲେ ଠିକ୍ ହେବ, ଏଥିପାଇଁ ବାପମା' ନିଜ ନିଜ ଭିତରେ କେତେ ତର୍କ ବିତର୍କ କଲେ । ଶେଷରେ ତା' ନାଁ ହୋଲି ରେଫି ଦେବାକୁ ସ୍ଥିର କଲେ ।

## ହୃତ୍‌ପିଣ୍ଡରେ ତ୍ରୁଟି

ଜୁଲାଇ ୨୬ରେ ହୋଲିକୁ ଖୁଆ ହେଉଥିଲା, ସେ ଅନିଃଶ୍ୱାସୀ ହୋଇଗଲା । ଡାକ୍ତର ତାର ହୃତ୍‌ପିଣ୍ଡରୁ ଏକ ଗୁଣୁ ଗୁଣୁ ଧ୍ୱନି ଶୁଣି-ପାରିଲେ । ଡାକ୍ତରଖାନାର ଶାସକ ଜନ୍ ହିଣ୍ଡଙ୍କ ପାଖରେ ଏ ଗୁଣୁଗୁଣୁ ଧ୍ୱନିର ଉଦ୍ବାହକତା ଅଛପା ରହିଲା ନାହିଁ । ଡାକ୍ତର ଜାଣିଲେ ତା' ହୃତ୍‌ପିଣ୍ଡରେ କ୍ଷତି ରହିଯାଇଛି । କି ପ୍ରକାର କ୍ଷତି ? ତାକୁ କିପରି ସୁଧାରିବାକୁ ହେବ ? ସେଇ ଡାକ୍ତରଖାନାର ୧୦ । ୧୨ ଜଣ ଡାକ୍ତର ସମସ୍ତେ ହୋଲିପାଇଁ ଲାଗିପଡ଼ିଲେ । ହୋଲି ଦକ୍ଷିଣପୂର୍ବ ଲଣ୍ଡନର ଏକ ବସ୍ତି ଅଞ୍ଚଳର ଆସଫୋର୍ଡ ଡାକ୍ତରଖାନାରେ ଜନ୍ମ ହୋଇଥିଲା । ସେଠି ସଙ୍ଗେ ସଙ୍ଗେ ହୋଲି ହୃତ୍‌ପିଣ୍ଡର ଇଲେକ୍‌ଟ୍ରୋ କାର୍ଡ଼ିଓଗ୍ରାମ

କରିଗଲା । ହୃତ୍‌ପିଣ୍ଡ ସ୍ପନ୍ଦନର ରେଖା ଶେଷ ଉଠିଗଲା । ହୋଲାର ଅବସ୍ଥା କ୍ରମେ ଅଧିକ ସଙ୍କଟାପନ୍ନ ହେଲା । ସେଇ ଗ୍ରେଟ ଡାକ୍ତରଖାନାରେ ତାକୁ ଆଉ ବେଶୀ ସମୟ ରଖିବା ନିରାପଦ ନୁହେଁ । ତେଣୁ ମାଆ ଓ ଝିଅକୁ ଏକ ହୃଦ୍‌ରୋଗ ଡାକ୍ତରଖାନାକୁ ପଠାଗଲା । ଲଣ୍ଡନର ଏହା ବିଖ୍ୟାତ ଜାତୀୟ ହୃଦ୍‌ରୋଗ ଡାକ୍ତରଖାନା । ଲଣ୍ଡନର ବିଶିଷ୍ଟ ହୃଦ୍‌ରୋଗବିତ୍ ଡଃ ମାଗଦି ୟାକୁବ୍ ଶିଶୁଟିର ଚିକିତ୍ସାଭାର ନେଲେ । ସେତେବେଳେ ଡଃ ୟାକୁବ୍ ୧୨୦ଟି ହୃତ୍‌ପିଣ୍ଡ ରୋପଣର ଅଭିଜ୍ଞତା ଅର୍ଜନ କରି ସାରିଥିଲେ ।

ହୋଲାର ରୋଗ ଚିହ୍ନିବାକୁ ତାଙ୍କୁ କଷ୍ଟ ହେଲାନାହିଁ । ସେ ଜାଣି-ପାରିଲେ—ହୋଲା ଏକ ଜନ୍ମଗତ ହୃଦ୍‌ରୋଗରେ ଆକ୍ରାନ୍ତ । ତା'ର ବାଁ ପାଖ ହୃତ୍‌ପିଣ୍ଡ ଯେମିତି ଗଢ଼ାହେବା କଥା, ହୋଇନି । ସେଥିରେ ତ୍ରୁଟି ରହିଯାଇଛି । ଅସ୍ତ୍ର ଚିକିତ୍ସା ଦ୍ୱାରା ତାକୁ ସଜାଡ଼ି ହେବନି । ହୃତ୍‌ପିଣ୍ଡଟିକୁ ବଦଳାଇ ସେଠି ନୂଆ ହୃତ୍‌ପିଣ୍ଡଟିଏ ରୋପଣ କରିବାକୁ ହେବ । ନ କଲେ, ମାତ୍ର କେତେ ସପ୍ତାହ ମଧ୍ୟରେ ହୋଲା ଏ ସଂସାରରୁ ବିଦାୟ ନେବ । ଏ ପ୍ରକାର ଚିକିତ୍ସା ଇତିହାସରେ ହୋଲା ହେଲା ପୃଥିବୀର କନିଷ୍ଠ ଅଗ୍ରଗାମୀ ।

## ଠିକଣା ହୃତ୍‌ପିଣ୍ଡ କାହିଁ ?

ଈଶ୍ୱର ହୋଲାକୁ ଜନ୍ମ ଦେଲେ, କିନ୍ତୁ ଠିକଣା ହୃତ୍‌ପିଣ୍ଡଟିଏ ଦେଲେ ନାହିଁ । ପାରିଲେ ତାକୁ କେବଳ ଡାକ୍ତରମାନେ ଯୋଗାଡ଼ କରି ବଞ୍ଚାଇବେ । ସଦ୍ୟଜାତ ଶିଶୁଙ୍କ ହୃତ୍‌ପିଣ୍ଡକୁ ଏପର୍ଯ୍ୟନ୍ତ ଡାକ୍ତର କଟାକଟି କରି ସଜାଡ଼ୁଥିଲେ । କିନ୍ତୁ ଏତେ ଛୋଟ ପିଲାଠାରେ ଆଗରୁ ହୃତ୍‌ପିଣ୍ଡ ରୋପଣ ହୋଇନଥିଲା । ଆଗରୁ ଯେଉଁ ପିଲାର ହୃତ୍‌ପିଣ୍ଡ ବଦଳ ହୋଇଥିଲା ତାକୁ ୧୫ ଦିନ ହୋଇଥିଲା । ସେ କିନ୍ତୁ ଏ ବିପତ୍ତିରୁ ବର୍ତ୍ତି ନଥିଲା । ତା'ଠାରେ ହୃତ୍‌ପିଣ୍ଡ ରୋପଣ ହେବା ସଙ୍ଗେ ସଙ୍ଗେ ତା'ର ପ୍ରାଣ-ବାୟୁ ଉଡ଼ିଯାଇଥିଲା । ଏଥିପାଇଁ ଡଃ ୟାକୁବ୍ ନିରାଶ ହୋଇ ନଥିଲେ । ତାଙ୍କ ମତରେ ଅସ୍ତ୍ର ଚିକିତ୍ସାରେ ଯାହା କିଛି ନୂଆ ହେଉଛି ସବୁତ ପରୀକ୍ଷାମୂଳକ ।

ଏବେ ଅସଲ ଅସୁବିଧା ହେଲା, ହୋଲା ପାଇଁ ଦରକାର ହେଉଥିବା କୋଳି ପରି ହୃତ୍‌ପିଣ୍ଡଟିଏ ମିଳିବ କେଉଁଠୁ ? ଏଣେ ତାରିଖ ଗଡ଼ିଯାଇଛି, ଆସି ଜୁଲାଇ ୨୮ ହେଲାଣି । କେତେବେଳେ କ'ଣ ହୋଇଯାଇପାରେ ।

ହୃତ୍‌ପିଣ୍ଡ ଖୋଜିବା ପାଇଁ କମ୍ପ୍ୟୁଟର ସଂସ୍ଥାକୁ ଅନୁରୋଧ କରାଗଲା । ୟୁରୋ ଟ୍ରାନ୍ସପ୍ଲାଣ୍ଟ କମ୍ପ୍ୟୁଟର ସଂସ୍ଥା ଗତ ୧୨ବର୍ଷ ଧରି ହୃତ୍‌ପିଣ୍ଡ ଅନ୍ୱେଷଣ କାର୍ଯ୍ୟରେ ଦାତାମାନଙ୍କୁ ଠାବ କରି ଲାଗିଛି । ଏହାର କାମ ହେଲା— ଯେଉଁମାନେ ଅକାଳ ମୃତ୍ୟୁର ସମ୍ମୁଖୀନ, ଯାହାଙ୍କର ଆଉ ବଞ୍ଚିବାର ଆଶା ନାହିଁ ଅଥଚ ତାଙ୍କ ହୃତ୍‌ପିଣ୍ଡ ସୁସ୍ଥ ଓ ଅକ୍ଷତ ଅବସ୍ଥାରେ ଅଛି, ସେମାନଙ୍କ ଖୋଜଖବର ରଖିବା । କେବଳ ସେମାନଙ୍କ ନାମ ଘୋଷଣା କଲେ ହେବ ନାହିଁ । ସେମାନଙ୍କର ହୃତ୍‌ପିଣ୍ଡର ଯାବତୀୟ ତଥ୍ୟ ଏହି କମ୍ପ୍ୟୁଟର ସଂସ୍ଥା ସଂଗ୍ରହ କରିଥାଏ । ୟୁରୋପରେ ଅନ୍ୟ ଯେଉଁ ସଂସ୍ଥାଟି କାର୍ଯ୍ୟ କରୁଛି, ତାକୁ ୟୁରୋଟ୍ରାନସପ୍ଲାଣ୍ଟ ସଂସ୍ଥା କୁହାଯାଏ । ଉଭୟ ସଂସ୍ଥା ନିକଟଭାବେ ଏହି କାର୍ଯ୍ୟରେ ପରସ୍ପରକୁ ସାହାଯ୍ୟ କରନ୍ତି । ଗ୍ରହୀତା ହୃତ୍‌ପିଣ୍ଡର ବିବରଣୀ ଆଗରୁ କମ୍ପ୍ୟୁଟରକୁ ଯୋଗାଇ ଦିଆଯାଇଥାଏ । ଏବେ ଦାତା ହୃତ୍‌ପିଣ୍ଡର ବିବରଣୀ ସହିତ ଗ୍ରହୀତା ହୃତ୍‌ପିଣ୍ଡର ସାଦୃଶ୍ୟ କମ୍ପ୍ୟୁଟର ମିଳାଇଥାଏ । ହଜାର ହଜାର ହୃତ୍‌ପିଣ୍ଡ ମଧ୍ୟରୁ ଉପଯୁକ୍ତ ଦାତା ଓ ଗ୍ରହୀତାକୁ ଏ କମ୍ପ୍ୟୁଟର ସଂସ୍ଥା ମାତ୍ର କେତେ ମିନିଟ୍‌ରେ ଖୋଜି ବାହାର କରେ ।

## ହୃତପିଣ୍ଡ ମିଳିଲା

ଜୁଲାଇ ୨୯ ଅପରାହ୍ଣରେ ଖବର ଆସିଲା ଯେ ନେଦରଲାଣ୍ଡ୍‌ସରେ ୩ ବର୍ଷର ଉତ୍‌ଫିଲର ହୃତ୍‌ପିଣ୍ଡ ମିଳିପାରିବ । ତା'ର ଓଜନ ୩.୨ କେଜି ଫିଲଟିର ମସ୍ତିଷ୍କରେ ଆଘାତ ଲାଗି ତାହା ଚୂରି ହୋଇଯାଇଛି । ହୋଲର ହୃତ୍‌ପିଣ୍ଡ ସହିତ ଏହି ହୃତ୍‌ପିଣ୍ଡ ବେଶ୍ ମିଳିଯାଉଛି ।

ଶଲ୍ୟ ଚିକିତ୍ସକମାନେ ତତ୍ପର ହୋଇ ଉଠିଲେ । ଏବେ କଥା ହେଲା କେତେ ଚଞ୍ଚଳ ସେହି ହୃତ୍‌ପିଣ୍ଡ ଅଣାଯାଇ ପାରିବ । ଏଥିପାଇଁ ନିଶ୍ଚୟ ଏକ ଉଡ଼ାଜାହାଜରେ ଯିବାକୁ ହେବ । ଏଥିପାଇଁ ଏକ ଜେଟ୍ ବିମାନ ଦରକାର । ବିମାନଟି ନେଦରଲାଣ୍ଡ୍‌ସର ନିଜ୍‌ମେଗେନ ବିମାନଘାଟୀରେ ଅବତରଣ କରିବ । ଡଃ ୟାକୁବ୍ ୟୁରୋ ଟ୍ରାନ୍ସପ୍ଲାଣ୍ଟ ସଂସ୍ଥାର ବ୍ରିଷ୍ଟଲ-ଠାରେ ଥିବା ମୁଖ୍ୟ ଦପ୍ତରକୁ ଏହା ଜଣାଇଲେ । ସଂସ୍ଥାର ପ୍ରଶାସକ ପିଟର୍ ବ୍ରୁମାନ ଜୁଲାଇ ୨୯ର ଅପରାହ୍ଣ ୮ଟା ୩୦ରେ ଏ ଖବର ପାଇଲେ । ସଙ୍ଗେ ସଙ୍ଗେ ସେଣ୍ଟଜନ୍ ବିମାନ ସଂସ୍ଥାକୁ ଏହା ଜଣାଇ ଦିଆଗଲା । ସଂସ୍ଥା ସମସ୍ତ ଆନୁଷଙ୍ଗିକ ସରକାରୀ ସର୍ତ୍ତ ପୂରଣ କରି ମାତ୍ର ୫୭ ମିନିଟ୍ ମଧ୍ୟରେ-

ଜେଟ୍ ବିମାନଟିଏ ବନ୍ଦୋବସ୍ତ କଲା । କିନ୍ତୁ ଏହା ଯେଉଁଠି ଅବତରଣ କରିବ, ତାହା ନେଦରଲାଣ୍ଡସର ଏକ ସାମରିକ ବିମାନଘାଟୀ । ଏଥିପାଇଁ ସ୍ୱତନ୍ତ୍ର ଅନୁମତି ଦରକାର ।

ହୋଲା କୌଣସି ରାଷ୍ଟ୍ରପତି କି ପ୍ରଧାନମନ୍ତ୍ରୀ ନୁହେଁ, କି ତାଙ୍କର ସନ୍ତାନ ସନ୍ତତି ବା ଆତ୍ମୀୟ ନୁହେଁ । ଜଣେ ଶିଶୁ ହୃଦ୍‌ରୋଗୀ ମାତ୍ର । ତା'ର କୋଳପରି ହୃତ୍‌ପିଣ୍ଡରେ ତ୍ରୁଟି ଦେଖା ଦେଇଛି । ତାକୁ ସୁଧାରିବାକୁ ହେଲେ ଖୁବ୍ ଶୀଘ୍ର ବଦଳେଇବାକୁ ହେବ । ଏଥିପାଇଁ ଏକ ଉପଯୁକ୍ତ ହୃତ୍‌ପିଣ୍ଡ ନେଦରଲାଣ୍ଡସରେ ଦପ୍‌ଦପ୍ କରୁଛି । ତାକୁ କେତେ ମିନଟ୍ ମଧ୍ୟରେ ନ ଆଣିଲେ, ତାହା ନୀରବ ହୋଇଯିବ । ଏଣେ ହୋଲାର ଜୀବନ ଦୀପ ନିଭିଯିବ । ମାନବିକ ଦୃଷ୍ଟିକୋଣରୁ ଓ ଶଲ୍ୟ ଚିକିତ୍ସାର ପରୀକ୍ଷାଦୃଷ୍ଟିରୁ ଏହାର କାର୍ଯ୍ୟକାରିତା ତାତ୍ପର୍ଯ୍ୟପୂର୍ଣ୍ଣ । ନଜ ମେମନ୍ ସାମରିକ ଘାଟୀରେ ଅବତରଣ କରିବାକୁ ସଙ୍ଗେ ସଙ୍ଗେ ଅନୁମତି ଆସିଗଲା ।

## ପୃଥିବୀର ଐତିହାସିକ ଶିଶୁ

ଲଣ୍ଡନ ବାହାରେ ଥିବା ହିଥ୍ରୋ ବିମାନ ଘାଟୀରୁ ସନ୍ଧ୍ୟା ୭ଟା ୨୦ରେ ଡଃ ୟାକୁବ୍‌ଙ୍କ ବିମାନ ଉଠିଲା । ସେଇ ରାତି (ଜୁଲାଇ ୩୦) ପାହାନ୍ତାରେ ଜେଟ୍ ହୃତ୍‌ପିଣ୍ଡ ଧରି ଡାକ୍ତର ଫେରି ଆସିଲେ । ତାହା ୩ ଦିନର ଓତ୍ ଶିଶୁର ହୃତ୍‌ପିଣ୍ଡ । କମ୍ପ୍ୟୁଟର ତାକୁ ହୋଲା ପାଇଁ ଉପଯୁକ୍ତ ବୋଲି ବାଛିଛି । ହୃତ୍‌ପିଣ୍ଡର କୌଣସି କ୍ଷତି ନ ହେବା ପାଇଁ ତାକୁ ଲବଣ ଦ୍ରବଣରେ ବୁଡ଼ା ହୋଇଥାଏ । ସଙ୍ଗେ ସଙ୍ଗେ ବିମାନରୁ ଓହ୍ଲାଇ ୧୦ ଜଣ ସହକର୍ମୀଙ୍କୁ ଧରି ଡଃ ୟାକୁବ୍ ହୋଲାର ଅସ୍ତ୍ରଚିକିତ୍ସା କରିବାକୁ ବାହାରିଲେ । ସେ ସାରାରାତି ଶୋଇ ନାହାନ୍ତି । ଏପରି ଅନସୂମିତତାରେ ସେ ଅଭ୍ୟସ୍ତ । ଡାକ୍ତରମାନେ ଯଦି ନିୟମ କରି ଖିଆପିଆ ଶୁଆବସା କରିବେ ରୋଗୀ ପାଇଁ ଯମଦେବତାଙ୍କ ସଙ୍ଗେ ଲଢ଼ିବେ କିପରି ? ଠିକ୍ ସକାଳ ୫ଟା ୩୦ ବେଳକୁ ହୋଲାର ଅସ୍ତ୍ର ଚିକିତ୍ସା ଶେଷ ହେଲା । ଜୁଲାଇ ୩୦ର ନୂଆ ସୂର୍ଯ୍ୟ ଉଇଁଲା ବେଳକୁ ହୋଲଠାରେ ନୂଆ ହୃତ୍‌ପିଣ୍ଡ ଦପ୍‌ଦପ୍ କରିବାକୁ ଲାଗିଲା ।

ସେଦିନ ଉପରବେଳା ଡଃ ୟାକୁବ ତାଙ୍କର ଦୈନନ୍ଦିନ ରୋଗୀ ଚିକିତ୍ସା ଓ ପରାମର୍ଶ ଦେବାପାଇଁ ହେୟାର ଫିଲ୍ଡ ଡାକ୍ତରଖାନାକୁ

ବାହାରଗଲେ । ଜାଣ୍ଟସ୍ ହୃତ୍‌ପିଣ୍ଡ ଚକିତ୍ସାଳୟ ଘୋଷଣା କଲ—ହୋଲକୁ ଏକ ନୂଆ ହୃତ୍‌ପିଣ୍ଡ ମିଳି ଯାଇଛି ଓ ସେ ଭଲ ଅଛି । ହୋଲଠାରେ ହୃତ୍‌ପିଣ୍ଡ ନରୋପଣ ହେଲା ବେଳକୁ ତା'ର ବୟସ ୧୦ ଦିନ ।

ଜୁଲାଇ ୩୦ ତାରିଖ ଦିନ ଏକ ଜୀବାଣୁ-ବିହୀନ ପ୍ରକୋଷ୍ଠ ମଧ୍ୟରେ ତା'ର ନିଦ ଭାଙ୍ଗିଲା । ସେହି ପ୍ରକୋଷ୍ଠର ତାପମାତ୍ରା, ଚାପ, ଆର୍ଦ୍ରତା ଓ ବାୟୁର ଉପାଦାନ ବିଭିନ୍ନ ଯନ୍ତ୍ରପାତିରେ ନିୟନ୍ତ୍ରିତ । ତାହାର ଶରୀରରୁ ତାର ପରି ଗୁଡ଼ିଏ ଛୋଟ ଛୋଟ ନଳୀ ବିଭିନ୍ନ ଯନ୍ତ୍ରପାତିକୁ ଲାଗିଥାଏ । ତଥାପି ସେ ଆଖି ମେଲି ଏକ ସାଧାରଣ ସୁସ୍ଥ ଶିଶୁ ପରି ହାତଗୋଡ ହଲାଇଲା । ବାହାରେ ସମ୍ବାଦପତ୍ର ଓ ଦୂରଦର୍ଶନ ସଂସ୍ଥାର ପ୍ରତିନିଧିମାନେ ଠିଆ ହୋଇଥିଲେ । ଫଟୋ ଉଠାଳିମାନେ ହୋଲର ଫଟୋ ଉଠାଇ ନେଲେ । ସେମାନେ ବାହାର ଦୁନିଆକୁ ଜଣାଇ ଦେଲେ ଯେ, ପୃଥିବୀ ଏକ ଐତିହାସିକ ଶିଶୁର ସନ୍ଧାନ ପାଇଲା ।

## ଅଭାଗିନୀର ଭାଗ୍ୟ

କିନ୍ତୁ ଦୁଃଖର କଥା ଏ ଆନନ୍ଦ ବେଶୀ ଦିନ ସ୍ଥାୟୀ ହେଲାନାହିଁ । ୮ । ୯ ଦିନ ପରେ ହୋଲର ବୃକକ୍ କାମ କଲା ନାହିଁ । କୃତ୍ରିମ ବୃକକ୍ ଲଗାଇ ତାକୁ ବଞ୍ଚାଗଲା । ପରେ ତା'ର ଶ୍ୱାସକ୍ରିୟାରେ ସମସ୍ୟା ଦେଖାଗଲା । ତାକୁ ଆଉ ସୁଧାରି ହୋଇ ପାରିଲା ନାହିଁ । ଅଗଷ୍ଟ ୯ ତାରିଖ ଦିନ ହୋଲର ନୂଆ ହୃତ୍‌ପିଣ୍ଡଟି ବନ୍ଦ ହୋଇଗଲା । ହୋଲ ସଂସାରରୁ ବିଦାୟ ନେଲା । ସେ ଚାଲିଗଲା ସତ; କିନ୍ତୁ ଏ ପୃଥିବୀରେ ଅସ୍ତ୍ର ଚକିତ୍ସା କ୍ଷେତ୍ରରେ ଏକ ବିରାଟ ଇତିହାସ ସୃଷ୍ଟି କରିଗଲା । ସେହି ଇତିହାସର ପୃଷ୍ଠା ଓଲଟାଇ ଅସ୍ତ୍ର ଚକିତ୍ସାରେ କେଉଁଠି ତ୍ରୁଟି ରହିଗଲା, ଅନ୍ୟ ଶଲ୍ୟ ଚକିତ୍ସକମାନେ ଜାଣି ପାରିବେ । ଫଳରେ ମୃତ୍ୟୁ ଦେବତା ଯମର କାରବାର ମର ଜଗତର ଡାକ୍ତରମାନଙ୍କୁ ଅଛପା ରହିବନି । ଯେଉଁ ଶିଶୁ କନ୍ୟାଟି ମାତ୍ର ୧୦ ଦିନ ବୟସରେ ହୃତ୍‌ପିଣ୍ଡ ବଦଳ କରିଥିଲା ଓ ନୂଆ ହୃତ୍‌ପିଣ୍ଡ ଧରି ଆଉ ୧୦ ଦିନ ଏକ ଜୀବାଣୁ ବିହୀନ ପ୍ରକୋଷ୍ଠ ମଧ୍ୟରେ ଜୀବନ ବିତେଇ ଥିଲା, ସେ ଥିଲା ପ୍ରକୃତରେ ଅଭାଗିନୀ । ହେଲେ ବି ସେ ଆମ ସମସ୍ତଙ୍କର ଏକ ଅଳିଭା ସ୍ମୃତି । କେଉଁ ଭାଗ୍ୟବତୀକୁ ବା ଲୋକେ ବିଶେଷତଃ ଅସ୍ତ୍ର ଚକିତ୍ସକମାନେ ଏପରି ମନେ ରଖିବେ ?

# ବର୍ଷିକଥା ବାହୁନା

ଆମ ଗାଁ ର ସୁନେଇମା ବୁଢ଼ୀ ଥାଏ ଥାଏ ହଠାତ୍ ଦିନେ ଖୁବ୍ ବଡ଼ ପାଟିରେ କାନ୍ଦି ଉଠେ । କାନ୍ଦିବା ନୁହେଁ ଗୀତମିତ ବାହୁନା । ସେ ସେଦିନ ସକାଳୁ ବାହୁନିବ ବୋଲି ତା ସଞ୍ଜରୁ ଘର ଓଳାଓଳି ଓ ବାସନ ମଜା ସାରି ଦେଇଥାଏ । ବଡ଼ ପାଟିରେ ମଲାପୁଅ ମଧୁସୂଦନର ଗୁଣଗୁଡ଼ିକ ଗାଇ ଗାଇ ମୁଣ୍ଡ ପିଟି ହେଉଥାଏ । ଗାଁ ଲୋକେ ଫି ବର୍ଷ ଏମିତି ସୁନେଇମା ବାହୁନା ଶୁଣି ଆସୁଛନ୍ତି । ତେଣୁ ସେ ଯାହା କାମରେ ଯାନ୍ତି । ଆମେ କେଇଜଣ ପିଲା ବୁଢ଼ୀକୁ ଘେରିରହି ସେ କ'ଣ ବାହୁନୁଛି ଶୁଣୁ । ତା'ର ସେହି କୋହମୁତା ବାହୁନାରୁ ବୁଝୁ ସେ ତା'ର ଗୁଣର ପୁଅ ମଧୁ ବର୍ଷର ଏଇ ଦିନେ ତା କୋଳ ଶୂନ୍ୟ କରି ଚାଲି ଯାଇଛି ।

ଏବେ ଜୁନ୍ ୫ ତାରିଖରେ ସବୁଆଡ଼େ ବିଶ୍ୱପରିବେଶ ଦିବସ ପାଳିତ ହେଲା । ଗାଁ ସହର, ସ୍କୁଲ୍, କଲେଜ କୌଣସି ସ୍ଥାନ ବାଦ ପଡ଼ିଲାନି । ସବୁଆଡ଼େ ଲୋକ ସଭାସମିତି କଲେ । ନର୍ଦ୍ଦମା ସଫେଇ, ବୃକ୍ଷ ରୋପଣ, ଏପରିକି ବୁଲା କୁକୁର ଓ ଗାଈ ଗୋରୁଙ୍କ ଚର୍ଚ୍ଚା ବର୍ଚ୍ଚା ବି କଲେ । ଭାଷଣ ଜରିଆରେ ନେତାଙ୍କଠାରୁ କର୍ମୀଙ୍କ ପର୍ଯ୍ୟନ୍ତ ସମସ୍ତେ ପ୍ରାୟ ସେହି ଏକା କଥା ବାହୁନି ବସିଲେ । କୁଆଡ଼େ ଗଲା ସେ ଜଙ୍ଗଲ ? ତାକୁ ଭେଦି ଭୂଇଁରେ ଖରା ପଡ଼ୁନ ଥିଲା । ସାପ, ବେଙ୍ଗ, ମୂଷା ପ୍ରଭୃତି କିସମ କିସମର ଜୀବଜନ୍ତୁ ଖାଲି ହାଲୁ ହାଲୁ ହେଉଥିଲେ । କେତେ ପ୍ରକାର ଫୁଲଫଳରେ ସ୍ଥାନ ମହକୁଥିଲା । ସୁଆଡ଼େ ବୃକ୍ଷିବ ଖାଲି ଅମୂଲ୍ୟ ଔଷଧଗଛ । ମେଘ ଡାକୁଥିଲା, ମାଟି ଧୋଇ ହେଉ ନଥିଲା ଇତ୍ୟାଦି ଇତ୍ୟାଦି ଅନେକ କଥା । କେତେକ

ଟେବୁଲ ବାଡ଼େଇ ଶପଥ ନେଲେ—ଯା ଯେଉଁଠି ପୂଜାଏ ପୂଜାଏ ରହି ଯାଇଛି ତାକୁ ନଷ୍ଟ କରିବା ନାହିଁ । ରାସ୍ତା କଡରେ ହାଡ଼ ମୁଣ୍ଡରେ, ଠେଙ୍ଗା ଟୁଙ୍ଗା ହୁଦ ଜମିରେ ଏଣିକି ଗଛ ଲଗାଇବା । ଦରକାର ନ ପଡ଼ିଲେ କଳକାରଖାନା ନାଁ ଧରିବା ନାହିଁ । ଯଦିବା କାରଖାନା ହେବ ସେଥିରୁ ବଂଚୂତ ଧୂଆଁ ବାହାରିବ, ତାହାର ନିଷ୍କାସିତ ଜଳରେ ମାଛ ବା ଉଦ୍ଭିଦ ମରିବେ ନାହିଁ, ତାହା ଯଦି ପାନୀୟ ଉପଯୋଗୀ ହୋଇପାରେ ତାହାହେଲେ ଆହୁରି ଭଲ । ଏହାଶୁଣି ସଭାର ଆଗଧାଡ଼ି ଲୋକେ ସମସ୍ତେ ତାଳି ମାରିଲେ ।

ପ୍ରକୃତରେ ଆମେ କଲେଜରେ ପଢ଼ୁଥିଲାବେଳେ କଟକ ସହରରେ ସଞ୍ଜ ନ ହେଉଣୁ ବିଲୁଆ ଭୁକୁଥିଲେ । ଏବେ ଛ ଗାଁ ଦଣ୍ଡାରେ ବିଲୁଆ ଡାକ ଶୁଭୁ ନାହିଁ । ନନ୍ଦନକାନନରେ ଦର୍ଶକ ସିଂହ ପାଖରେ ଯେତିକି କଟାଉଛି, ବିଲୁଆ ଦେଖିବାରେ ତାହାର ସେତିକି ସମୟ ଯାଉଛି । ଆଗେ ଦିନ ତମାମ କଟକ ଆକାଶରେ ଶାଗୁଣାମାନେ ଚକ୍‌ର ଖାଉଥିଲେ ଏବେ ସେମାନେ କ'ଣ କରୁଛନ୍ତି, କେବଳ ପ୍ରାଣୀବିଜ୍ଞାନୀ ଜାଣିଥିବେ । ଗାଈ ଗୋରୁ ଆଗେ ବାଛି ବାଛି ଘାସ ଖାଉଥିଲେ ଏବେ ରିକ୍‌ସାରେ ବସିଥିବା ଭଦ୍ର-ମହିଳା ସାବଧାନ ନ ହେଲେ ସହରୀବୁଲା ଗାଈମାନେ ତାଙ୍କ କାନ ଖାଇଯିବେ । କୁଆଡ଼େ ଗଲା ସେ ପରିବେଶ ?

ସୃଷ୍ଟି ଆରମ୍ଭରୁ ମଣିଷ ପଶୁପରି ରହୁଥିଲା । ଯେତେବେଳେ ମାଙ୍କଡ଼ଟିଏ ପ୍ରକୃତି ଉପରେ ଯେତିକି ପ୍ରଭାବ ପକାଉଥିଲା ମଣିଷଟିଏ ପ୍ରାୟ ସେତିକି ପ୍ରଭାବ ପକାଉଥିଲା । ତେଣୁ ପ୍ରକୃତି ମଣିଷ ବା ମାଙ୍କଡ଼ ଉପରେ ଠିକ୍ ଏକାପରି ପ୍ରତିକ୍ରିୟା ସୃଷ୍ଟି କରୁଥିଲା । ଫଳରେ ପ୍ରକୃତି ସମତୁଲ ହୋଇ ରହିଥିଲା । ଜଣାଯାଏ ପ୍ରାୟ ୧ ନିୟୁତ ବର୍ଷ ଧରି ମଣିଷର ସ୍ୱଭାବ କ୍ରମାଗତ ବଦଳିଲା । ହାତକୁ ନାନା ଅସ୍ତ୍ରଶସ୍ତ୍ର ଆସିଲା; ସେ ତାର ପରମ୍ପରା ଓ ସଂସ୍କୃତି ଗଢ଼ିଲା । କିନ୍ତୁ ଏହି ସମୟ ମଧ୍ୟରୁ ୧୯ ଲକ୍ଷ ୯୦ ହଜାର ବର୍ଷ ସେ ହେଲା ଶିକାରୀ ବା ସଂଗ୍ରାହକ । ଅରଣ୍ୟ ଦରସିଝା ଫଳମୂଳ ବା ଶିକାର ମାଂସ ଖାଇ ବଞ୍ଚିଲା । ଏଇମାତ୍ର ୧୦ ହଜାର ବର୍ଷ ହେଲା ସେ କୃଷି କରି ଶିଖିଲା ଓ ପଶୁପକ୍ଷୀ ଏବଂ ଗଛଲତାଙ୍କୁ ବଢ଼େଇ ଆପଣାର କଲା । ସେଇ ଦିନୁ ପରିବେଶ ଉଜୁଡ଼ି ଲାଗିଛି ।

ନମେ ଏ ଉଜୁଡ଼ା ବଢ଼ୁଛି ସିନା କମୁ ନାହିଁ । ମଣିଷ ବଦଳୁଛି, ତା’ ପରିବେଶ ବଦଳୁଛି । ଏହାକୁ ଅଟକାଇବା କିପରି ? ପରିବର୍ତ୍ତନଶୀଳ ବୃଦ୍ଧି, ବୃଦ୍ଧି ଜୀବନର ଲକ୍ଷଣ । ଜୀବନ ଓ ପରିବେଶର ପ୍ରତିକ୍ରିୟା ରହିଲେ ପରିବର୍ତ୍ତନ ଅବଶ୍ୟମ୍ଭାବୀ । ଏ ଦୁହିଁଙ୍କୁ ସ୍ଥାଣୁ ଅବସ୍ଥାରେ ରଖିବା ପ୍ରାୟ ଅସମ୍ଭବ । ତେଣୁ ଜୀବନ ଧାରଣ ପାଇଁ ଆମକୁ ଏକ ଅନୁକୂଳ ପରିବେଶ ସନ୍ଧାନ କରିବାକୁ ହେବ । ଏବେ କଟକ ପରିବେଶରେ ଆମେ ବାଲୁଆ ଓ ଶାଗୁଣାକୁ ଖୋଜିଲେ ମିଳିବ ନାହିଁ । କଟକବାସୀଙ୍କ ଅଳିଆ ଆଜି କୋଟିପତି ନଗରପାଳିକା ସମିତିକୁ ଅସମ୍ଭାଳ କଲଣି, ସେ ଘର ଘୁଷୁରି, ବୁଲା କୁକୁର, ବାଲୁଆ, ଶାଗୁଣା ଭୁଲେଇବେ କିପରି ?

ପ୍ରତି ମୁହୂର୍ତ୍ତରେ ପୃଥିବୀର ଅସମତା ଆମକୁ ଅଥୟ କରୁଛି । ୧୯୭୦ ମସିହାରେ ଜନ୍ମ ନେଇଥିବା ଏକ ଆମେରିକୀୟ ଶିଶୁ ୭୦ ବର୍ଷ ବଞ୍ଚିଲେ ତାହାର ତଳ ଜିନିଷତକ ଦରକାର । ଏହା ଏକ ହାରାହାରି ହିସାବ ।

୫୬ ନିୟୁତ ଗ୍ୟାଲନ ଜଳ ।
୨୧ ହଜାର ଗ୍ୟାଲନ ଗ୍ୟାସୋଲିନ୍ ।
୧୦ ହଜାର ପାଉଣ୍ଡ ମାଂସ ।
୨୮ ହଜାର ପାଉଣ୍ଡ କ୍ଷୀର ଓ ଲହୁଣୀ ।
୬୦ ହଜାର ଟଙ୍କାର ପୋଷାକ ।
୭୦ ହଜାର ଟଙ୍କାର ଆସବାବପତ୍ର ।
୧୦ଟି ସ୍ୱୟଂ ଚାଳିତ ଯାନ ।
୨୮ ଟନ୍ ଇସ୍ପାତ ଓ ଲୁହା ।
୫ ହଜାର ଘନଫୁଟ କାଠ ।
୧½ ଟନ ଡବ୍ବା ।

ଏ ରେଡ଼ିଓ ଓ ଟେଲିଭିଜନ ଯୁଗରେ ଆମେରିକା କଥା ଆମକୁ ଅଛପା ନାହିଁ । ଯିଏ ସେଠିକି ଯାଉଛି ଆଉ ଫେରୁନାହିଁ । ଏସବୁ ଜିନିଷର ଏକ ହଜାର ଭାଗରୁ ଭାଗେ ଯଦି ଏସିଆର ପିଲାଏ ପାଆନ୍ତି ତାହାହେଲେ

ଧନ୍ୟ ହୁଅନ୍ତେ । କୌଣସି ଆଦମ ପରିବେଶରେ ଥାଇ ଆମେ କ'ଣ ଏସବୁ ପାଇପାରିବା ?

ଆଦମ ଜଙ୍ଗଲ ଓ ପଶୁପକ୍ଷୀଙ୍କୁ ଖୋଜିଲେ ଚଳିବ ନାହିଁ । ସେମାନେ ଯେଉଁଠି ଅଛନ୍ତି ସେଠି ଥାନ୍ତୁ । ଆମ ପରିବେଶକୁ ସୁଧାରିବା ଭଳି ଗଛ ଲତା ଓ ଜୀବ ଜନ୍ତୁଙ୍କୁ ଆମକୁ ଖୋଜିବାକୁ ହେବ । ସେଥିପାଇଁ ଆମକୁ ଯୋଜନା କରି ଏକବିଂଶ ଶତାବ୍ଦୀର ଜଙ୍ଗଲ ଉଠାଇବାକୁ ହେବ । ଯେଉଁ ଗଛଗୁଡ଼ିକ ସେଥିରେ ସୁଧୁରି ପାରିବେ ନାହିଁ ତାଙ୍କ ପାଇଁ ନନ୍ଦନକାନନ ସୃଷ୍ଟି କରିବାକୁ ହେବ । କେବଳ ଆଲୋଚନା ଓ ଭାଷଣରେ ସମୟ ଓ ଅର୍ଥ ବ୍ୟୟ ନକରି ନିଷ୍ଠାପର କର୍ମୀଙ୍କୁ ନେଇ ଏ ଯୋଜନା ଆରମ୍ଭ କରିବାକୁ ହେବ । ନହେଲେ ଓଧ ସଙ୍ଗେ ବଣ ଭୂଆ ବାଇ ହେଲାପରି ଏକ ଆଦମ ପରିବେଶକୁ ୱୀର ହେଲେ ଆମ ଗାଁ ଲୋକେ ଏହାକୁ ସୁନେଇମାର ବର୍ଷିକିଆ ବାହୁନା ବୋଲି କହିବେ । ବୁଢ଼ିଲା ଲୋକେ ବାଟ ଭାଙ୍ଗିଯିବେ, ପିଲାଏ କେବଳ କୌତୁକ ଦେଖିବେ ।



# ନୂଆ ଏକ୍ସରେ ଫଟୋ

ଏକ୍ସରେ ତ ବହୁଦିନୁ ବାହାରିଲାଣି ଆଜ୍ଞା ଖୋଜୁଖୋଜୁ ମାହାଦେବ ବାହାରିଲା ପରି ଏକ୍ସରେ ବାହାରିଥିଲା । ଜର୍ମାନ ବୈଜ୍ଞାନିକ ରଞ୍ଜନ ଏକ କାଚଟ୍ୟୁବ୍‌ରେ ଗ୍ୟାସଗୁପ କମିଲେ କପର ବିଦ୍ୟୁତ୍ ପ୍ରବାହିତ ହୁଏ ଲକ୍ଷ୍ୟ କରୁଥିଲେ । ସେତେବେଳକୁ ତାଙ୍କୁ ୫୦ ବର୍ଷ ବୟସ ହେଲାଣି । ଗବେଷଣାର ଉଦ୍ଦାମ ବା ଉତ୍ସାହ ଧିମେଇ ଆସିଲାଣି । ଆଖିରୁ ତେଜ କମିଲାଣି । ମନରୁ ଆଶା ମଉଳିଲାଣି । ତଥାପି ସ୍ୱତମତ ଧାରାରେ ସେ ଲାଗି ପଡ଼ିଛନ୍ତି, କାଳେ କିଛି ମିଳିଯିବ । ଅନ୍ଧାରରେ ବାଡ଼ ବୁଲାଉ ବୁଲାଉ ଟେବୁଲ ତଳେ ପଡ଼ିଥିବା କାଗଜ ଖଣ୍ଡିକ ଜକ ଜକ ହୋଇ ଉଠିଲା । ସେ ଜାଣିଲେ ତାହା ଏକ ଅଜଣା ରଶ୍ମିର ପ୍ରଭାବ । ଅଜଣା ରଶ୍ମି ଜଣାପଡ଼ିଗଲା । ରଞ୍ଜନ ନୋବେଲ ପୁରସ୍କାର ପାଇଲେ । କାରଣ ଡାକ୍ତରମାନେ ଦେଖାଇଦେଲେ ଯେ ମାନବ ଜାତିର କଲ୍ୟାଣ ପାଇଁ ଏକ୍ସରେ ଏକ ଅମୂଲ୍ୟ ଅବଦାନ । ଅଫିସରଙ୍କୁ କ୍ୟାନ୍‌ସର ହୋଇଛି, ଶ୍ରେଷ୍ଠ ପିଲାଟିର ହାଡ ଭାଙ୍ଗିଗଲାଣି, ଯୁବକର ଫୁସ୍ ଫୁସ୍‌କୁ ଯକ୍ଷ୍ମା । ଜୀବାଣୁ ଝୁଣୁଛନ୍ତି, ପଣ୍ଡିତଙ୍କ ପେଟରେ ଘା ରୁଗୁରୁଗୁ ହେଉଛି; ସମସ୍ତେ ଧାଇଁଲେ ଏକ୍ସରେ ଡାକ୍ତରଙ୍କ ପାଖକୁ । ଡାକ୍ତର ବାବୁ ଡାକ୍ତରଖାନାରେ କେତେ ଫଟୋ ଉଠାଇବେ ? ପାରିଲେ ନାହିଁ । ଲୋକଙ୍କ ମଙ୍ଗଳ ପାଇଁ ହାତରୁ ପଇସା ଖର୍ଚ୍ଚ କରି ଏବେ ନିଜ ଘରେ ଫଟୋ ଉଠାଉଛନ୍ତି । ଏଥିପାଇଁ ତାଙ୍କୁ ଫୁରୁସତ ନାହିଁ । ଅନ୍ଧାର ଘର କାର୍ଯ୍ୟ । ଭିତରୁ ଫଟୋ ଉଠିବ । ବେହେରା ସହକର୍ମୀ ଖଞ୍ଜା ହୋଇଛନ୍ତି । ପେଟପାଟଣା ପାଇଁ ସେମାନଙ୍କୁ ସିନା ଦି'ପଇସା ମିଳୁଛି; କିନ୍ତୁ ରୋଗୀମାନେ ଦ୍ରବ୍ୟବଦଳରେ ଫେରି ପାଉଛନ୍ତି ତାଙ୍କ ଅମୂଲ୍ୟ ଜୀବନ । ଏ ତ ସେହି ପୁରୁଣା ଏକ୍ସ-ରେ

କଥା । ଅନେକ ଦିନୁ ଏହା ଡାକ୍ତରଖାନାରୁ ଆରମ୍ଭ କରି ଗଳିକନ୍ଦିରେ ଥିବା ଡାକ୍ତରଙ୍କ ଘର ମଣ୍ଡନ କରୁଛି । ନୂଆ ଏକ୍ସ-ରେ ଫଟ କ'ଣ ? ଏକ୍ସ-ରେ ସିନା ପୁରୁଣା; କିନ୍ତୁ ଏବେ ନୂଆ ପ୍ରକାରେ ସେଥିରୁ ଫଟ ଉଠା ହେଉଛି ।

ସମସ୍ତେ ଜାଣନ୍ତି ପୁରୁଣା ଶତ୍ରୁ ଓ ନୂଆ ରୋଗର ସଙ୍ଗେ ସଙ୍ଗେ ପ୍ରତିକାର ନ କଲେ ଜୀବନ ବିପଦାପନ୍ନ । ନୂଆ ରୋଗକୁ ଚିହ୍ନିବା ପାଇଁ ଏକ୍ସ-ରେ ଫଟ ନେଲାବେଳେ ଅତି ସତର୍କ ହେବାକୁ ପଡ଼େ । ମୂଲ୍ୟବାନ ଫିଲ୍ମ କିଣାଯାଏ । ଅଭିଜ୍ଞ ଫଟଉଠାଳି ଦରକାର । ତଥାପି ଫଟ ଯଦି ଝାପ୍ସା ହେଲା ସାଧାରଣ ଡାକ୍ତର ଧରି ପାରିବେ ନାହିଁ; କିନ୍ତୁ ଏବେ ରୁଷିଆରେ ଏକ ନୂଆ ଉପାୟରେ ଏକ୍ସରେ ଫଟ ଉଠାଉଛନ୍ତି । ଏଥିପାଇଁ ଅନ୍ଧାର ଘର, ମୂଲ୍ୟବାନ ରସାୟନିକ, ସୁଗ୍ରାହୀ ଫିଲ୍ମ ବା ଅଭିଜ୍ଞ ଫଟଉଠାଳି ଦରକାର ନାହିଁ ।

ଏହି ନୂଆ ପ୍ରକାର ଫଟ ଉଠାଇବାକୁ ବିଦ୍ୟୁତ୍ ରଞ୍ଜନୋଗ୍ରାଫି କହୁଛନ୍ତି । ଆଶ୍ଚର୍ଯ୍ୟ କଥା ଫଟ ମିଳିବାକୁ ୫ ଗୁଣ କମ୍ ସମୟ ଲାଗୁଛି । ତେଣେ ପଇସା ଖର୍ଚ୍ଚ ମଧ୍ୟ ୧୦ ଗୁଣ କମିଯାଉଛି । ପ୍ରଥମେ ୧୯୧୬ରେ ଜଣେ ରୁଷୀୟ ଡାକ୍ତର ଓ୍ୱାଇ ଗୋଲିନ ଏହି ଫଟ ଉଠାଇବା ପରୀକ୍ଷା କରି ଦେଖାଇଲେ । ଏବେ ସେମି କଣ୍ଡକ୍ଟର ବା ଅର୍ଦ୍ଧ ପରିବାହୀ ବାହାରିଲା ପରେ ତାଙ୍କ ଫଟଉଠା ବିଶେଷ ଫଳପ୍ରଦ ହୋଇଛି । ଏଥିପାଇଁ ସେଲିନିୟମ ସେମିକଣ୍ଡକ୍ଟର ଦରକାର ।

ସେଲିନିୟମରେ ବିଦ୍ୟୁତ୍ ଚାର୍ଜ ଜନ୍ମାଇ ଦିଆଯାଏ । ଫିଲ୍ମ ଦରକାର ନାହିଁ ! ରୋଗୀରୁ ଯେଉଁ ଏକ୍ସ-ରେ ବାହାରୁଥାଏ ତାହା ଯାଇ ସେଲିନିୟମ ଉପରେ ପଡ଼େ । ସେଲିନିୟମରେ ଥିବା ଚାର୍ଜଗୁଡ଼ିକ ଏକ୍ସ-ରେର ତୀବ୍ରତା ଅନୁସାରେ ପ୍ରଭାବିତ ହୁଏ । ସେହି ସେଲିନିୟମ ଉପରେ ଏକ ପ୍ରକାର ଧୂଳି ଛିଞ୍ଚାଯାଏ । ଧୂଳିଗୁଡ଼ିକ ଚିପି ରହି ଏକ ପ୍ରକାର ଫଟ ଉଠିଯାଏ । ରଶ୍ମିର ତୀବ୍ରତା କମ୍ ବେଶୀ ହୋଇଥିଲେ ଧୂଳିଗୁଡ଼ିକ କମ୍ ବେଶୀ ପରିମାଣରେ ଜମିଯାନ୍ତି । ରୋଗୀର ଅଙ୍ଗରେ ରଶ୍ମି ସହଜରେ ଯାଇ ପାରୁଛି କି ନାହିଁ ତାହା ଏହି ଚିତ୍ର ଦେଖିଲେ ଜଣାପଡ଼ିଯାଏ ।

ଏବେ ଏହି ଧୂଳିକୁ ରଙ୍ଗିନ୍ କରି ଯାଉଛି । ସ୍କ୍ରିନ୍‌ରେ ସେଲିନିୟମ ଉପରେ ଯେକୌଣସି ଧଳା କାଗଜ ପକାଇ ଫଟକୁ ଉତ୍ତାରନେଇ ହେଉଛି । ସେହି ସେଲିନିୟମ ପ୍ଲେଟ୍‌ଟି ପୁଣି ଥରେ କାମରେ ଲଗୁଛି । ଦେଖାଯାଇଛି ଗୋଟିଏ ସେଲିନିୟମ ପ୍ଲେଟ୍ ୩ ହଜାର ଥର ବ୍ୟବହୃତ ହେବ । ପ୍ରାୟ ଦୁଇ ମିନିଟ୍‌ରେ ଥରେ ଫଟ ଉଠିପାରିବ । ଅନ୍ଧାର ଘର ଦରକାର ନାହିଁ । ରୋଗୀ ଯଦି ୨ ମିନିଟ୍‌ରେ ତାହାର ଫଟନେଇ ଫେରିବ, ସେ କେତେ ଖୁସି ନ ହେବ ? ପ୍ରକୃତରେ ଡାକ୍ତରଖାନାରେ ରୋଗ ଭଲକରିବା ଯେତେ କଷ୍ଟ ନୁହେଁ, ଧାଡ଼ିଦେବା, ଅନ୍ୟର ଅନୁସରଣ କରିବା, ବୁଲାଗାଈ ଓ କୁକୁରଙ୍କ ମେଳରେ ଘଣ୍ଟା ଘଣ୍ଟା ଠିଆହେବା ସେତିକି ବିରକ୍ତିକର ଓ ଯନ୍ତ୍ରଣାଦାୟକ । ସେଥିପାଇଁ ଆମ ବୁଢ଼ାବାପା କହୁଥିଲେ, ଯେଉଁ ଲୋକ କଚେରି ଓ ଡାକ୍ତରଖାନା ନ ମାଡ଼ିଛି ସେ ହିଁ କେବଳ ସୁଖୀ । ଅବଶ୍ୟ ଡାକ୍ତର ଓ ଓକିଲଙ୍କ ପ୍ରତି ତାହା ପ୍ରଯୁଜ୍ୟ ନୁହେଁ ।

ଆସ୍ତେ ଆସ୍ତେ ଅନ୍ୟ ଦେଶରେ ନୂଆ ଫଟଉଠା ଚାଲୁହେବ । ରୋଗୀଙ୍କ ଉପରେ ଏ ଫଟଉଠା ପରୀକ୍ଷା କରିବାକୁ ବର୍ତ୍ତମାନ ଆପତ୍ତି ବାଧା ଅଛି । ଏଥିପାଇଁ ଅତି ତୀବ୍ର ରଞ୍ଜନରଶ୍ମି ବ୍ୟବହାର କରାଯାଏ । କାରଣ ତୀବ୍ର ରଞ୍ଜନରଶ୍ମି ସେଲେନିୟମ ଉପରେ ପ୍ରଭାବ ପକାଏ, କିନ୍ତୁ ତୀବ୍ର ରଶ୍ମି ମଣିଷ ଶରୀରରେ ବିପଦ ସୃଷ୍ଟି କରେ । ସେଥିପାଇଁ ଦୁର୍ବଳ ରଶ୍ମିରେ କିପରି ଫଟ ଉଠିପାରିବ ତାହାର ଅନୁସନ୍ଧାନ ଚାଲିଛି । ଏଥିପାଇଁ ଅତି ଉଚ୍ଚକୋଟିର ସୁଗ୍ରାହୀ ସେଲେନିୟମ ପ୍ଲେଟ୍ ଦରକାର । ବୈଜ୍ଞାନିକମାନେ ଲାଗି ପଡ଼ିଛନ୍ତି କିପରି ଉପଯୁକ୍ତ ସେଲେନିୟମ ପ୍ଲେଟ୍ ଉଦ୍ଭାବିତ ହେବ । ତାହାହେଲେ ନୂଆ ଏକ୍‌ସରେ ଫଟଉଠା ପ୍ରଣାଳୀ କେବଳ ଇଞ୍ଜିନିୟରିଂ ଓ ଶିଳ୍ପବିଭାଗରେ ଆବଦ୍ଧ ନ ରହି ଡାକ୍ତରଖାନାରେ ଦେଖାଦେବ । ରୁଷୀୟ ବୈଜ୍ଞାନିକମାନେ ଦାବିକରନ୍ତି ଯେ, ସେମାନେ ସୁଗ୍ରାହୀ ସେଲେନିୟମ ବାହାର କରିପାରିଲେଣି । କିନ୍ତୁ ବିଜ୍ଞାନରେ ନୂଆ ନୂଆ କଥା ଖାଲି ଆବିଷ୍କୃତ ବା ଉଦ୍ଭାବିତ ହେଲେ ଭାରତବାସୀ ଆନନ୍ଦିତ ହେବେ ନାହିଁ । ସେସବୁ ଶସ୍ତା ହେବା ଦରକାର । ନଚେତ୍ ଖାଲି ବେଲ୍ ପାଚିବା ସାରହେବ ମିନା କିନ୍ତୁ କୁଆର କିଛି ଲାଭ ହେବ ନାହିଁ ।

# କର୍କଟ ରୋଗର ଅସ୍ତ୍ର

ହଜାର ହଜାର ଡାକ୍ତର ଓ ବୈଜ୍ଞାନିକ ଆଜି ସାରା ପୃଥିବୀରେ କର୍କଟ ବା କାନସର ରୋଗ ନେଇ ବ୍ୟସ୍ତ । କିଛି ଟିକିଏ ସୂଚନା ମିଳିଲେ ସଙ୍ଗେ ସଙ୍ଗେ ତାହା ଖବରକାଗଜର ପୃଷ୍ଠା ମଣ୍ଡନ କରୁଛି । ଏହି ରୋଗ କାହିଁକି ହୁଏ, ତା'ର କପରି ଚିକିତ୍ସା ହେବ, ତାହାର ପ୍ରତିଷେଧକ କ'ଣ, ସାଧାରଣତଃ କେଉଁ ଲୋକମାନେ ଆକ୍ରାନ୍ତ ହେଉଛନ୍ତି; ରୋଗ ମୂଳରୁ କପରି ଧରାପଡ଼ିବ ପ୍ରତ୍ୟେକ ବିଷୟ ଟିକିନିଖି କରି ସେମାନେ ପରୀକ୍ଷା କରୁଛନ୍ତି । ଅନେକ କ୍ଷେତ୍ରରେ ରୋଗ ଭଲ ହେଉଛି, କେତେକ କ୍ଷେତ୍ରରେ ରୋଗ ଆୟତ୍ତାଧୀନ, ସ୍ଥଳେ ସ୍ଥଳେ ବିଶେଷଜ୍ଞମାନେ ମଧ୍ୟ ପରାସ୍ତ । ଏବେ ଆଶା ଓ ଉତ୍ସାହବାଣୀ ଶୁଣାଇ ସୋଭିଏଟ୍ ଡାକ୍ତର ଘୋଷଣା କରିଛନ୍ତି ଯେ ସେମାନେ ଚର୍ମ କାନ୍‌ସର ଭଲକରି ପାରୁଛନ୍ତି ।

ଚର୍ମରେ ଘାଉଣ୍ଡରେ କ"ଣଟିଏ ଉଠିଲା । ଦିନକୁ ଦିନ ବଢ଼ିବାକୁ ଲାଗିଲା । ରୋଗୀ ଡାକ୍ତରଙ୍କ ପାଖେ ପହଞ୍ଚିବାରୁ ଡାକ୍ତର ଚିହ୍ନିଲେ ଯେ ତାହା ଅନିଷ୍ଟକାରକ । ତାହା ଦିନେ ସାଂଘାତିକ ହୋଇ ଜୀବନ ନେବ । ସାଧାରଣ ଅସ୍ତ୍ର ଚିକିତ୍ସା ଫଳପ୍ରଦ ନୁହେଁ । ଏବେ ଏ' ସମ୍ବନ୍ଧରେ ଦୁଇଜଣ ରୁଷୀୟ ଡାକ୍ତର ଆର: କାଭେତ୍‌ସ୍କି ଓ ଏନ୍: ଗାମେଲିୟା ତାଙ୍କ ଫଳାଫଳ ପ୍ରକାଶ କରିଛନ୍ତି । ଲେଉନେନ୍‌ରେ ଅର୍ବୁଦ ଚିକିତ୍ସା ପାଇଁ ଯେଉଁ ଗବେଷଣା କେନ୍ଦ୍ର ଅଛି ସେଠାରେ ସେମାନେ ଗବେଷଣା କରୁଥିଲେ । ସେମାନେ ଦେଖିଥିଲେ ଯେ ଚମରେ ଉଠୁଥିବା ଘାଉଡ଼ ବା ଅର୍ବୁଦ ଉପରେ ଲେସର ରଶ୍ମି ପକାଇଲେ ତାହା ନବଢ଼ି ନଷ୍ଟ ହୋଇଯାଉଛି । କିଛି ଚିହ୍ନ ରହୁନାହିଁ । ସ୍ୱାଭାବିକଭାବେ ଲୋମ ଉଠୁଛି ।

୧୯୬୦ରେ ବୈଜ୍ଞାନିକ ମୈମାନ ଲେସର ଉଦ୍ଭାବନ କରିଥିଲେ । ରୁବି ପଦାର୍ଥକୁ ଆଲୋକ ଦ୍ୱାରା ଉତ୍ତେଜିତ କରି ସେଥିରୁ ସୂକ୍ଷ୍ମଧାରରେ ତୀବ୍ର ଆଲୋକ ଜନ୍ମାଇଲେ । ଏହି ଆଲୋକ ଧାରର ପ୍ରସ୍ଥ ଏକ ମିଲିମିଟରର ଶତାଂଶ ହେବ କି ନାହିଁ । କିନ୍ତୁ ଏହାର ତୀବ୍ରତା ଏତେ ପ୍ରଖର ଥିଲା ଯେ ଏକ ଇସ୍ପାତ୍ ବେଡ଼୍‌ରେ ଛିଦ୍ରଟିଏ କରିବାକୁ ଏକ ସେକେଣ୍ଡର ଦଶମାଂଶରୁ କମ୍ ସମୟ ନେଉଥିଲା । ଏହି ରଶ୍ମିର ଉଦ୍ଭାବନ ବେଳେ ଜନସମାଜ ଛନ୍ଦଭୟ ହେଲା । କିଏ ଜାଣେ ଏହି କାଳରଶ୍ମି ସାହାଯ୍ୟରେ ଯୁଦ୍ଧଖୋର ନେତାମାନେ କ'ଣ ନକରିବେ ? କିନ୍ତୁ ଯୁଦ୍ଧରେ ଲାଗିବା ପୂର୍ବରୁ ଡାକ୍ତରମାନେ ତା'ର ସଦୁପଯୋଗ କଲେ ।

ଚକ୍ଷୁଡାକ୍ତର ଚକ୍ଷୁ ମଧ୍ୟରେ ସୂକ୍ଷ୍ମ ତନ୍ତୁ ଓ ଶିରାପ୍ରଶିରାର ଢିଲେଇ ବା ଯୋଖାଯୋଖି ଆରମ୍ଭ କଲା । ଚନ୍ଦ୍ରର ଦୂରତା ସଠିକ ଭାବେ ମାପିବା ପାଇଁ ମହାକାଶ ବୈଜ୍ଞାନୀ ତାକୁ ପ୍ରୟୋଗକଲା । ଏବେ ୧୯୬୫ରେ ରୁଷୀୟ ଡାକ୍ତରମାନେ ତାକୁ କର୍କଟ ରୋଗର ପ୍ରଧାନ ଅସ୍ତ୍ର ବୋଲି ଘୋଷଣା କରିଛନ୍ତି ।

କେତେକ ଜୀବଜନ୍ତୁଙ୍କୁ ଆଣି ତାଙ୍କ ଚମରେ ସେମାନେ ଏହି କର୍କଟ ରୋଗର ଘାଉଡ଼ି ଜନ୍ମାଇଲେ । ପରେ ଲେସର ରଶ୍ମି ପ୍ରୟୋଗ କରି ସେମାନେ ଆଶାଜନକ ଭାବେ କୃତିତ୍ୱ ହାସଲ କଲେ ।

ସେମାନେ କହନ୍ତି ଲେସର ରଶ୍ମି ପ୍ରୟୋଗ କଲେ ପ୍ରଥମେ ଘାଉଡ଼ିଟି ଫୁଲିଉଠେ । ଗ୍ଲେଟିଆ ମେଘଖଣ୍ଡପରି ତା'ର ବର୍ଣ୍ଣ ବଦଳେ । ତା'ର କଡ଼ସବୁ ଆସ୍ତେ ଆସ୍ତେ ଶୁଖି ଚଟକା ହୋଇଯାଏ । ତା' ପରେ ପରେ ଘାଉଡ଼ିଟି ମରିଯାଏ । ତା' ଉପରେ ଖୋଳପା ବାନ୍ଧେ । କିଛି ଦିନ ପରେ ତାହା ଖସିପଡ଼େ । ତାହା ଉପରେ ଲୋମଉଠେ । ପରେ ସେଠି ଘାଉଡ଼ିଥିଲା ବୋଲି କେହି ଜାଣିପାରିଲେ ନାହିଁ ।

କାଳ-ରଶ୍ମି ଲେସରର ପ୍ରୟୋଗ ଶରୀରର ଅନ୍ୟାନ୍ୟ ସୁସ୍ଥ ଅଙ୍ଗପ୍ରତ୍ୟଙ୍ଗ ଉପରେ କୌଣସି କୁପ୍ରଭାବ ପକାଏ ନାହିଁ । ଇତରପ୍ରାଣୀ

ଉପରେ ଏହାପରେ ଗୁଡ଼ିଏ ପରୀକ୍ଷା କଲାପରେ ମନୁଷ୍ୟ ଶରୀରରେ ଲେସର ଚିକିତ୍ସା ଆରମ୍ଭ ହୋଇଛି; ଫଳ ଚମତ୍କାରପ୍ରଦ । ଅଧିକାଂଶ କ୍ଷେତ୍ରରେ ଚର୍ମ କ୍ୟାନ୍‌ସର ପରିହୃତ ।

୧୯୬୯ରେ ଏକ ବିଶିଷ୍ଟ ଚିକିତ୍ସା କେନ୍ଦ୍ର ଖୋଲିଲା । ଘାଆ ସାଙ୍ଘାତିକ ହେଉ ବା ନହେଉ ତାକୁ ନିର୍ମୂଳ କରିବାକୁ ଡାକ୍ତରମାନେ ଚେଷ୍ଟା କଲେ । ପ୍ରଥମେ ୧୭ ବର୍ଷର ଏକ ବାଳକ ଆସି ହାଜର ହେଲା । ସେତେବେଳକୁ ତା' ମୁଖମଣ୍ଡଳ ଅଧାଅଧି ଘାଆରେ ପୂରି ଯାଇଥିଲା । ବିଶେଷତଃ ତାଳୁଠାରୁ କାନମୂଳ ପର୍ଯ୍ୟନ୍ତ ଏତେ ଘାଆ ଉଠିଥିଲା ଯେ ମୋରିଚ ପକାଇବାକୁ ସ୍ଥାନ ନଥିଲା । ଗୋଲିଆ ଗୋଲିଆ ହୋଇ ନୀଳ ଓ ରକ୍ତବର୍ଣ୍ଣର ଘାଆଗୁଡ଼ିକ ବଡ଼ ସାଙ୍ଘାତିକ ଜଣାପଡ଼ୁଥିଲା । ଯେତେ ସାବଧାନ ହୋଇ ଅସ୍ତ୍ର ଚିକିତ୍ସା କରିଥିଲେ ମଧ୍ୟ ତାହା ମୁହଁରେ ଯେଉଁ ଦାଗ ରହିଥାନ୍ତା ସେଥିରେ ପିଲଟି ଅତି ବିଭତ୍ସ ଓ କଦାକାର ଦିଶିଥାନ୍ତା । ତେଣୁ ଚିକିତ୍ସକମାନେ ତାହାର ଚିକିତ୍ସା ପାଇଁ ସାହସ କଲେ ନାହିଁ । ତେଣୁ ଏହି ଅର୍ବୁଦ ଚିକିତ୍ସା କେନ୍ଦ୍ରକୁ ଆସିବା ଛଡ଼ା ତାହାର ଅନ୍ୟ ଉପାୟ ନଥିଲା ।

ତା'ର ମୁଖମଣ୍ଡଳକୁ ସେହି କାଳ-ରଶ୍ମି ଲେସରଦ୍ୱାରା ଆଲୋକିତ କରାଗଲା । ଘାଆଗୁଡ଼ାକ ଉଭେଇଗଲା । ଯେତେବେଳେ ସେ ତାହାର ଗାଁରେ ପହଞ୍ଚିଲା, ଗ୍ରାମବାସୀ ତାକୁ ଚିହ୍ନି ପାରିଲେ ନାହିଁ । ତାହା ମୁହଁକୁ ଅତି ନିରେଖି ଚାହିଁଲେ ବି କେଉଁଠି ଘାଆ ଉଠିଥିଲା ଜଣାପଡ଼ୁ ନଥିଲା ।

ଏଥରକ ଅନ୍ୟ ଏକ ରୋଗୀ ଆସିଲା । ସେ ହେଉଛି ଛଅବର୍ଷର ବାଳକଟିଏ । ତାହାର ବାଆଁ କାନର ମଝିରେ ଗୋଟିଏ ଘାଆ ବଢ଼ୁଥିଲା । ମାଆ ପେଟରୁ ସେହି ଘାଆଟି ଧରି ସେ ଜନ୍ମ ହୋଇଥିଲା । ତାହା ଉପରେ ଅସ୍ତ୍ର ଚଳାଇବାପାଇଁ କୌଣସି ଅସୁବିଧା ନଥିଲା । ଅସ୍ତ୍ର ଚିକିତ୍ସକ ତାକୁ କାଟି ଫିଙ୍ଗିଦେଲେ । ଠିକ୍ ଦୁଇମାସ ପରେ ପୁଣି ସେଇଟି ଉଠିଲା । ଏଥରକ ତାକୁ ନକାଟି ତା'ଉପରେ ରଞ୍ଜନ ରଶ୍ମି ପକାଗଲା । ତୀବ୍ର ରଞ୍ଜନ ରଶ୍ମିରେ ତାକୁ ନଷ୍ଟ କରାଗଲା । ଏଥରକ ତା' ନିକଟରେ କାନର ଅନ୍ୟ ଅଂଶ ମଧ୍ୟ

ରଞ୍ଜନରଶ୍ମି ଜ୍ୱାଳା ଅନୁଭବ କଲା । କିନ୍ତୁ ଯଥା ତଥା । କିଛିଦିନ ପରେ ପୁଣି ଅର୍ବୁଦଟି ଉଠିବାକୁ ଆରମ୍ଭ କଲା ।

ପିଲାଟିକୁ ଲେସର ଚିକିତ୍ସା କେନ୍ଦ୍ରକୁ ଅଣାଗଲା । ଲେସରଦ୍ୱାରା ତାକୁ ନଷ୍ଟ କଲାପରେ ତାହା ଆଉ ଉଠିନାହିଁ । ସେହି ପିଲାଟିର ଗୋଟିଏ ଘାଉଥିଲା ବୋଲି ସେ ଦୂରଦୂରୁ ଭୁଲିଗଲାଣି । ଏହିପରି ଗୋଟିଏ ଦୁଇଟି ନୁହେଁ ୨୦୦ରୁ ଅଧିକ ଚିକିତ୍ସା ହୋଇ ସାରିଲାଣି । କୌଣସି କ୍ଷେତ୍ରରେ ରୋଗୀ ଆଉ ଡାକ୍ତରଖାନାକୁ ଫେରି ନାହିଁ । ସମସ୍ତେ ଆରୋଗ୍ୟଲାଭ କରିଛନ୍ତି ।

ତଥାପି ଏତେ ଶୀଘ୍ର କିଛି ସିଦ୍ଧାନ୍ତ ଦେଇହେବ ନାହିଁ । ମାତ୍ର କେତେ ବର୍ଷ ହେଲା ଚିକିତ୍ସା କରାଯାଇଛି । ଏକ ସାଙ୍ଘାତିକ ଅର୍ବୁଦ ପକ୍ଷରେ କେତେବର୍ଷ କିଛି ନୁହେଁ । ତେବେ ଡାକ୍ତରମାନଙ୍କ ମତ ଏପ୍ରକାର ଚର୍ମ ଅର୍ବୁଦ ପାଇଁ ଲେସର ବ୍ୟବସ୍ଥା ଏକାନ୍ତ ଫଳପ୍ରଦ ।

କର୍କଟ ରୋଗ ନାଁ ଶୁଣିଲେ କେବଳ ରୋଗୀ ନୁହେଁ ଡାକ୍ତର ମଧ୍ୟ ଛାନିଆ ହୋଇଯାଏ । ସାମାନ୍ୟ ଘାଉ ଯେ ଦିନେ ଅବାଞ୍ଛିତଭାବେ ସେଲ-ଗୁଡ଼ିକୁ ବୃଦ୍ଧି କରି ସାଙ୍ଘାତିକ ଅବସ୍ଥା ସୃଷ୍ଟି କରିବ, ଏହା ସାଧାରଣ ଲୋକର ଧାରଣାତୀତ । ତେଣୁ ସେ ମୂଳରୁ ତାକୁ ବେଖାତିର କରେ । ପରେ ଜାଣିଲା ବେଳକୁ ନେଉଁଗୁଡ଼ କିଛିଣୀକୁ ବିହିଯାଇ ଥାଏ । କିନ୍ତୁ ଏବେ କର୍କଟ ଉପସର୍ଗ ଯଥେଷ୍ଟ ଆଗରୁ ଜାଣିବା ପାଇଁ ଡାକ୍ତରମାନେ ତତ୍ପର ହୋଇ ଉଠିଲେଣି । କେବଳ ଦରିଦ୍ର ଜନସାଧାରଣ ସହଜରେ ଓ ସୁଲଭରେ ତା'ର ସୁବିଧା ସୁଯୋଗ ପାଇବେ କି ନାହିଁ ତାହାହିଁ ବିଚାରିବା କଥା । ଉନ୍ନତ ଦେଶରେ ଯେଉଁ ନୂଆ ପ୍ରକାର ଚିକିତ୍ସା ବାହାରିଲା ସଙ୍ଗେ ସଙ୍ଗେ ଉନ୍ନତିକାମୀ ବା ଅନଗ୍ରସର ଦେଶଗୁଡ଼ିକ ତା'ର ସୁଯୋଗ ନନେଲେ ସେମାନେ କାଳେ କାଳେ ସେହିପରି ଗୋଡ଼ାଣିଆ ହୋଇ ରହିଥିବେ । ଏଥିପାଇଁ ବଛା ବଛା ମେଧାବୀ ଛାତ୍ରଙ୍କୁ ନେଇ ବିଦେଶରୁ ତାଲିମପ୍ରାପ୍ତ କରି ଆଣିବା ଉଚିତ । ଦେଶର ସଡ଼କ, କୋଠାବାଡ଼ି, ନଈବନ୍ଧ ଓ ପୋଲ ଯେପରି ଉନ୍ନତିର ପରିଚାୟକ ଘାଉ ଚିକିତ୍ସା ମଧ୍ୟ ସେହିପରି ଦରକାରୀ ।

ରୋଗୀ ଯଦି ଅବହେଳା ବା ଚିକିତ୍ସା ଅଭାବରେ କେବଳ ମୃତ୍ୟୁକୁ ସବୁବେଳେ ଅପେକ୍ଷା କରି ରହେ ଓ ତା'ର ଦେଶବାସୀ ବା ସରକାର କେବଳ ଉଦାସୀନ ଅବସ୍ଥାରେ ଆହା ଚୁଚୁ କରନ୍ତି, ତାହାହେଲେ ତାହା ଏକ ସଭ୍ୟ ଦେଶ ବୋଲି ମନେ ହେବ ନାହିଁ ।

ରୋଗର ଚିକିତ୍ସା ନ ବାହାରି ଥିଲେ ବା ରୋଗ ଚିହ୍ନି ନ ହେଲେ କାହାକୁ ଦୋଷ ଦେଇ ହେବ ନାହିଁ । କିନ୍ତୁ ପୃଥିବୀର କୌଣସି ପ୍ରାନ୍ତରେ ଯଦି ଚିକିତ୍ସା ସମ୍ଭବ ହେଉଥାଏ ଏବଂ ଆମେ ତାକୁ ଗ୍ରହଣ କରିବାର ବହୁତ ବ୍ୟବସ୍ଥା ନ କରୁ ତାହାହେଲେ ସଭ୍ୟ ସମାଜରେ ଯୁଗ ଯୁଗ ପାଇଁ ଆମେ ଅକ୍ଷମଣୀୟ ହୋଇ ରହିବୁ । ସୀମିତ ସମ୍ବଳର ଦୁହାଇ ଦେଇ କେହି କ୍ଷମା ପାଇନପାରେ । ପ୍ରତ୍ୟେକ ସୀମା ପ୍ରସାରଣଶୀଳ । ଏକ ସଚେତନ ସମାଜ ପକ୍ଷରେହିଁ ତାହା ସମ୍ଭବ ।



# ମହାକାଶ-ବିମାନ (କଲମ୍ବିଆ)

## ଏକ ନୂଆ ଅଧ୍ୟାୟ

ଆକାଶ ବିମାନ ବା ଉଡ଼ାଜାହାଜ ଆଜି ଅତି ଜଣାଶୁଣା । ତଥାପି ପିଲାଏ ଆକାଶରେ ଉଡ଼ାଜାହାଜ ଦେଖିଲେ ଖେଳ ବନ୍ଦକରି ଅନେଇ ରହନ୍ତି । ବିଲବାଡ଼ିରେ କାମ କରୁଥିବା ଲୋକେ ହାତ ବନ୍ଦ କରି ଉପରକୁ ଅନାନ୍ତି । କୁହାକୁହି ହୁଅନ୍ତି "ନେତା ଆସିଥିଲେ ସ୍ୱଚକ୍ଷୁରେ ଆମ ହାଲହକିକତ ଦେଖିଯିବା ପାଇଁ । ସହରରେ ତ ବସ ମଟରର ଧୂଁ ଧାଁରେ ଲୋକେ ତଳକୁ ଅନେଇ ସତର୍କରେ ବାଟ ଚାଲୁଛନ୍ତି ଉପରକୁ ଅନେଇବାକୁ ତାଙ୍କର ବେଳକାହିଁ ? ଉଡ଼ାଜାହାଜର କାହାଣୀ ଅତି ଦୀର୍ଘ, ପ୍ରାୟ ଦୁଇଶ ବର୍ଷର ଇତିହାସ, ଯେପରି କରୁଣ, ସେହିପରି ରୋମାଞ୍ଚକର । ମଣିଷ କେଉଁ ଆଦିମ କାଳରୁ ଉଡ଼ିବାକୁ ସ୍ୱପ୍ନ ଦେଖିଛି ତାହା ଇତିହାସରେ ଲେଖାନାହିଁ କିନ୍ତୁ ଅଟୋ କପର ଆଣ୍ଡ୍ରୁ ଗର୍ଣ୍ଣି ଛୁଷ୍ଟାଇ ମେରୁହାଡ଼ ଭାଙ୍ଗିଲେ, ଅରଭିଲ ରାଇଟ୍ କପର ଗ୍ଲାଇଡ଼ରରେ ଇଞ୍ଜିନ ଖଞ୍ଜି ପ୍ରଥମେ ୧୨ ସେକେଣ୍ଡ ଉଡ଼ିଲେ ତାହା କେହି ଭୁଲି ପାରିବେ ନାହିଁ । ଏହାପରେ ଦୁଇଶ ବର୍ଷର ଦୁଃସାହସ, ଉଦ୍ୟମ, କୌଶଳ ଓ କାରିଗରୀ ଫଳରେ ଆଜି ଉଡ଼ାଜାହାଜ, ଜାଗୁଆର, ମିଗ୍, ମିରେଜ ଓ ଏଫ୍-୧୬ ରୂପ ଧାରଣ କରିଛି । ଶୁଣିଲେ ଶତ୍ରୁର ଛାତି ଥରଉଠୁଛି, ପଡ଼ୋଶୀ ରାଷ୍ଟ୍ରମାନେ ନିଶ୍ଚିନ୍ତରେ ଶୋଇ ବସି ପାରୁନାହାନ୍ତି ।

ପ୍ରକୃତରେ ପରାକ୍ରମୀ ରାଷ୍ଟ୍ରର ଉଡ଼ାଜାହାଜ ଏକ ଅପରିହାର୍ଯ୍ୟ ଯାନ । ଆମର ଯେତେ କୌଶଳୀ ଅଭିଜ୍ଞ ସ୍ଥଳବାହିନୀ ବା ନୌବାହିନୀ ଥିଲେ ବି ଏହା ବିନା ପ୍ରତିରକ୍ଷା ଅସମ୍ଭବ । ଡାକ ନେବାଆଣିବା, ଯାତ୍ରୀ ଯା ଆସ

କରିବା, ଆକାଶରୁ ପଡ଼ି ବାଣିବା, ଉପରୁ ଉତ୍ତଡ଼ ବନ୍ୟା-ବାତ୍ୟାର ପ୍ରକୋପ କଳନା କରିବାରେ ଏହା କପରି ସାହାଯ୍ୟ କରେ ତାହା କାହାକୁ ବୁଝାଇବାକୁ ପଡ଼ିବ ନାହିଁ । ଏହିଭଳି ଆକାଶ-ବିମାନ ସାହାଯ୍ୟରେ ତ ଆମେ ଚଳିଯାଉଥିଲୁ ପୁଣି ମହାକାଶ ପାଇଁ ଗୋଟିଏ ଦୁର୍ମୂଲ୍ୟ ବିମାନ ଦରକାର ପଡ଼ିଲା କାହିଁକି ?

ତାହାର ଠିକ୍ କୈଫିୟତ ଦେଇ ହେବନି । ଉଦ୍ଭାବନ ସାଧାରଣତଃ ତିନି ପ୍ରକାରରେ ଘଟିଥାଏ । ଯଥା—ଆତୁରତା, ଆକସ୍ମିକତା ଓ ଆଗ୍ରହ । ମହାକାଶକୁ ଯିବାକୁ ଲୋକେ ଆତୁର ବା ବ୍ୟଗ୍ର ହୋଇପଡ଼ି ନଥିଲେ । ତେଣୁ ମହାକାଶବିମାନର ଆବଶ୍ୟକତା ଲୋକଙ୍କ ପାଇଁ ସେପରି କିଛି ଜରୁରି ନଥିଲା । ବିଜ୍ଞାନର ଅନେକ ବିଶିଷ୍ଟ ଆବିଷ୍କାର ଖାଲି ସେମିତି ହେଉ ହେଉ ହୋଇଥାଏ । ମହାକାଶ ବିମାନ ସେଇଭଳି ଏକ ଆକସ୍ମିକ ଆବିଷ୍କାର ନୁହେଁ । ମହାକାଶର ଯେକୌଣସି ଗବେଷଣା ପାଇଁ କୋଟି କୋଟି ଟଙ୍କା ଖର୍ଚ୍ଚ ହୁଏ । ତେଣୁ କୌଣସି ମହାକାଶ ପରୀକ୍ଷା ଆକସ୍ମିକ ବା ଅକାଳପ୍ରସୂତ ହୋଇ ନପାରେ । ଅବଶ୍ୟ ଏହା ଏକ ଖିଆଲ, କୌତୁହଳ ବା ଆଗ୍ରହରୁ ଜନ୍ମ । କିନ୍ତୁ ଏ ଆଗ୍ରହ ବା ଖିଆଲ ପଛରେ ଯେ ଏକ ସୁଚିନ୍ତିତ ଲକ୍ଷ୍ୟ ନ ଥିଲା ତାହା ନୁହେଁ ।

୧୯୭୨ରୁ ଏକ ବିଧିବଦ୍ଧ ଯୋଜନା ଚାଲିଥିଲା । ଆମେରିକା ଏକ ମହାକାଶ-ବିମାନ ପାଇଁ ପ୍ରସ୍ତୁତ ହେଉଥିଲା । ନଅବର୍ଷ ପରେ, ୧୯୮୧ରେ ସେମାନେ ଏହାକୁ ସଫଳ ରୂପ ଦେଲେ । ଏହାର ନାମକରଣ ହେଲା "କଲମ୍ବିଆ" । ଆକାରରେ ଠିକ୍ ଡିସି-୯ ଉଡ଼ାଜାହାଜ ପରି, ଦୁଇଜଣ ଯାତ୍ରୀଙ୍କୁ ନେଇ ଏହା ମହାକାଶକୁ ଉଠିବ, ପୃଥିବୀ ପରିକ୍ରମା କରି ମହାକାଶ ଘାଟିରେ ଓହ୍ଲାଇବ । ଯାନଟି ଧ୍ୱଂସ ପାଇବ ନାହିଁ, ବାୟୁମଣ୍ଡଳରେ ଘଷି ହୋଇ ପୋଡ଼ିଯିବ ନାହିଁ, ତାହାର କୌଣସି ଯନ୍ତ୍ରପାତି ଅକାମୀ ହେବ ନାହିଁ, ଫେରିଆସିଲା ପରେ ତାହା ପୁଣି ଯାତ୍ରୀମାନଙ୍କୁ ଧରି ମହାକାଶକୁ ଯାଇପାରିବ । ଆଗରୁ ମହାକାଶକୁ କେବଳ ନିର୍ଦ୍ଦିଷ୍ଟ ତାଲିମପ୍ରାପ୍ତ ଲୋକ ପୂର୍ବାଭ୍ୟାସ ଓ କାରିଗରି ଦକ୍ଷତାବଳରେ ଯାଇପାରୁଥିଲେ ଏଣିକି ଦରକାର ପଡ଼ିଲେ ଯେକୌଣସି ସାଧାରଣ ନାଗରିକଠାରୁ ଦୁର୍ଦ୍ଦାନ୍ତ ନେତା ବା

ସାମରିକ ବିଶାରଦ ପର୍ଯ୍ୟନ୍ତ ସେ ବୁଝିବେ ସେ ପାଇପାରିବେ । ଯଥାର୍ଥରେ କଲମ୍ବିଆ ମହାକାଶ ବିଜ୍ଞାନର ଏକ ନୂତନ ଅଧ୍ୟାୟ ସୃଷ୍ଟି କଲା ।

## ବର୍ଷ କେଇଟାରେ କେତେକଥା :

କାଲପରି ଲାଗୁଛି, ସମସ୍ତଙ୍କ ଆଖି ଦେଖା କଥା, ପ୍ରଥମେ ଉପଗ୍ରହ ସ୍ପୁଟ୍‌ନିକର ଜନ୍ମ, ୧୯୫୭ ମସିହାର ବିସ୍ମୟକର ଉନ୍ମେଷବନ, ମହାକାଶ-ବିଜ୍ଞାନର ଅସ୍ମାରମ୍ଭ । ଏକ ନୂଆ ଯୁଗର ସୂଚନା ମିଳିଲା । ତାହା ହେଲା ମହାକାଶ ବିଜ୍ଞାନର ପ୍ରଥମ ଅଧ୍ୟାୟ । ପରେ ପରେ ଅନେକ ଘଟଣା ଘଟିଥିଲା । ଜୀବଜନ୍ତୁ ମହାକାଶକୁ ଯାଇ ଜୀବନ ଧରି ଫେରି ଆସିଲେ । ୧୯୬୧ରେ ଗାଗାରିନ୍ ହେଲେ ପ୍ରଥମ ମହାକାଶଯାତ୍ରୀ । ମଣିଷର ପ୍ରଥମ ମହାକାଶ ଯାତ୍ରା ମହାକାଶ-ବିଜ୍ଞାନର ଦ୍ୱିତୀୟ ଅଧ୍ୟାୟ । ତାପରେ ଦଶବର୍ଷିଆ ଯୋଜନା କରି ୧୯୬୯ ବେଳକୁ ଆମେରିକା ଚନ୍ଦ୍ର ଯାତ୍ରାରେ ସଫଳ ହେଲା । ତାହା ହେଲା ତୃତୀୟ ଅଧ୍ୟାୟ । ପୂଜାପାର୍ବଣର ଚନ୍ଦ୍ର ଓ କାବ୍ୟ କବିତାର ଚନ୍ଦ୍ରମା ଧୂଳି ଓ ପଥରର ମରୁ ଉପଗ୍ରହ ପାଲଟିଗଲା । ଯୁଗଯୁଗର ପାରମ୍ପରିକ ବିଶ୍ୱାସ ଓ ଧର୍ମ ଧାରଣା ସାଧାରଣ ମହଲରେ ବି ଚହଲି ଉଠିଲା ।

କିନ୍ତୁ ଏହି ଗୌରବମୟ ଚନ୍ଦ୍ରଯାତ୍ରା ପାଇଁ ଅଜସ୍ର ଅର୍ଥ ବ୍ୟୟ କରାଗଲା । ଥରେ ଚନ୍ଦ୍ରରୁ ବୁଲିଆସିଲେ ହଜାର ହଜାର କୋଟି ଟଙ୍କା ଖର୍ଚ୍ଚ ହୋଇଗଲା । କେତେକ କହିଲେ—ଏହା ବ୍ୟୟ ନୁହେଁ ଅପବ୍ୟୟ । ରୁଷିଆ ପ୍ରତିଦ୍ୱନ୍ଦ୍ୱିତାରୁ ଅପସରିଗଲା । ଆମେରିକା ମଧ୍ୟ ଗବେଷଣାର ଦିଗ ବଦଳେଇଲା । ଲୋକ ଦେଖାଣିଆ କଥାରେ ନ ମାତି ଜନ ହିତକର ଯୋଜନାରେ କୃତ୍ରିମ ମାମୁମାନେ (ଉପଗ୍ରହ) ଲାଗିପଡ଼ିଲେ । ସେମାନଙ୍କ ମଧ୍ୟରୁ କିଏ ଝଡ଼ଝଞ୍ଜାର ସୂଚନା ଦେଲା ତ କିଏ ଟେଲିଫୋନ ଆନ୍ଦୋଳନରେ ସତର୍କଘଣ୍ଟି ବାଜଇଲା । ପାଣିପାଗ ଖବର, ଦୂରଦର୍ଶନ ଯୋଗାଯୋଗ, ତୈଳ ବା ଖଣିଜ ସମ୍ପଦ ସନ୍ଧାନ କିମ୍ବା ସୀମାନ୍ତ ପ୍ରହରୀ କାର୍ଯ୍ୟରେ ଏମାନଙ୍କୁ ଖଟାଇ ଦିଆଗଲା । ମହାକାଶ ବିଜ୍ଞାନର ଏହି ଚତୁର୍ଥ ଅଧ୍ୟାୟରେ ମନେହେଲା ବିଜ୍ଞାନ ବିଶ୍ୱଶାନ୍ତି ଓ ଭ୍ରାତୃଭାବ ପାଇଁ ପ୍ରକୃତରେ ବାଟଫିଟେଇ ଦେଲା । ଫଳରେ ଅନ୍ୟ ଅନେକ ଦେଶମାନେ ନିଜନିଜର ଉନ୍ନତି ପାଇଁ ଯେ

ଯାହା କହିରରେ ରୁଷିଆ ଆମେରିକା ସହିତ ହାତ ମିଳେଇ ମହାକାଶ ଯୋଜନା ଆରମ୍ଭ କରିଦେଲେ ।

ଏବେ ୧୯୮୧ରେ କଲମ୍ବିଆର ସଫଳତା ଚତୁର୍ଥ ଅଧ୍ୟାୟ ସୃଷ୍ଟି କଲା । ଶହ ଶହ ବର୍ଷ ନୁହେଁ ମାତ୍ର ୨୫ ବର୍ଷ ମଧ୍ୟରେ ମହାକାଶ ବିଜ୍ଞାନର ପାଞ୍ଚଟି ଅଧ୍ୟାୟ ମଣିଷର ଚାଞ୍ଚଲ୍ୟମନ ପରିଶ୍ରମ ପ୍ରକୃତିପରି କେତେ କ'ଣ ଅସମ୍ଭବକୁ ସମ୍ଭବ କରାଇ ପାରିଲା ।

## କରାଳ ପଦକ୍ଷେପ :

୧୯୮୧ର ଏପ୍ରିଲ ୧୨ ତାରିଖ ! ଫ୍ଲୋରିଡାର କେପ୍ କାନାଭେରାଲ-ଠାରେ ଏକ ବିରାଟକାୟ ରକେଟ୍ ଉପରେ ୭୫୭ ଟନ୍ ଓଜନର ମହାକାଶ ବିମାନ ମହାକାଶକୁ ଯିବା ପାଇଁ ପ୍ରସ୍ତୁତ । ଏଥିରେ ଯାଉଛନ୍ତି ଅଧିନାୟକ ଜନ୍ ଡବ୍ଲ୍ୟୁ ୟଙ୍ଗ ଓ ସହଯାତ୍ରୀ ରବର୍ଟ ଏଲ କ୍ରିପେନ । କ୍ରିପେନ୍‌ଙ୍କର ଏହା ପ୍ରଥମ ମହାକାଶଯାତ୍ରା । ବିମାନଟି ଉର୍ଦ୍ଧ୍ୱରେ ପ୍ରାୟ ୨୮୦ କିଲୋ-ମିଟରକୁ ଉଠି ୫୪ ଘଣ୍ଟାକାଳ ରହଣି ମଧ୍ୟରେ ପୃଥିବୀକୁ ୩୬ ଥର ପରିକ୍ରମା କରିବ । ବାୟୁମଣ୍ଡଳରେ ଘଷି ହୋଇ ଏହା ପୃଷ୍ଠଦେଶର ତାପମାତ୍ରା ପ୍ରାୟ ୧୧୦୦ ଡିଗ୍ରୀ ସେଣ୍ଟିଗ୍ରେଡ୍ ହେବ । ଏହି ତାପମାତ୍ରାରେ ଯେକୌଣସି ସାଧାରଣ ଧାତୁ ଗରମ ହୋଇ ତରଳିଯିବ । କିନ୍ତୁ କଲମ୍ବିଆକୁ ଆଚ୍ଛାଦନ କରିଛି ୩୦ ହଜାର ତାପରୋଧୀ ଟାଇଲ । ସେଗୁଡ଼ିକ ତାତି ଲାଲ ହେବ ସତ କିନ୍ତୁ ଜଳିପୋଡ଼ି ବିକୃତ ହେବ ନାହିଁ । ପୁଣି ସେଗୁଡ଼ିକୁ ବ୍ୟବହାର କରିହେବ । ଫଳରେ କଲମ୍ବିଆ ଅତୁଟ ଅବସ୍ଥାରେ ଫେରିଆସିବ । ଏହା ହେଉଛି ଆମେରିକାର କାରିଗରୀ ଗାରିମାର ଅପୂର୍ବ ସାଫଲ୍ୟ ।

ଏହିଭଳି ଏକ ଅଶ୍ରୁତପୂର୍ବ ଘଟଣାର ପ୍ରତ୍ୟକ୍ଷଦର୍ଶୀ ବିବରଣୀ ଯୋଗାଇବା ପାଇଁ ୨୦ଟି ଦେଶରୁ ୩୫୦୦ ଜଣ ସାମ୍ବାଦିକ ଆସି ଫ୍ଲୋରିଡ଼ାରେ ଜମା ହୋଇଛନ୍ତି । ଏହି ଯାନରେଥିବା ୫ଟି କମ୍ପ୍ୟୁଟର ସମତାଳରେ ସମାନ ଗଣନା ନ କରିବାରୁ ଏ ଯାତ୍ରାକୁ ଦୁଇଥର ଅଟକାଇ ଦିଆଯାଇଥିଲା । ଆଜି କିନ୍ତୁ ସବୁ ଠିକ୍‌ଠାକ୍ ଅଛି ବୋଲି ଘୋଷଣା କରାଯାଉଛି ।

ଫ୍ଲୋରିଡ଼ାର ନିର୍ମଳ ଆକାଶ । ଧଗଧଗ ଦିଗ୍‌ବଳୟ ତଳେ ଖଣ୍ଡେ ଦିଖଣ୍ଡ ବାଦଲ ସାଥୀହରା ହୋଇ ଭାସି ବୁଲୁଛନ୍ତି । ଅଗ୍ନି ସଂଯୋଗ କରିବାର ମାତ୍ର ୧ ମିନିଟ ୧୭ ସେକେଣ୍ଡ ମଧ୍ୟରେ ଉତ୍‌କ୍ଷେପଣୀ ରକେଟ ତଳୁ ହଳଦିଆ ଶିଖା ଜିଭ ଲହ ଲହ କରି ଉଠିଲା । ମନେହେଲା ରକେଟ୍‌ଟା ପୃଥିବୀ ପୃଷ୍ଠରୁ ଧଳାଧୂଆଁର ଏକ ସ୍ତମ୍ଭ ସୃଷ୍ଟି କରି ଚାଲିଛି । ଇଞ୍ଜିନ ଦୁଇଟି କାର୍ଯ୍ୟକାରୀ ହୋଇ ମାତ୍ର ୮-୧/୨ ମିନିଟ୍ ମଧ୍ୟରେ ଯାନଟିକୁ ୧୧୮ କିଲୋମିଟର ଉଠାଇନେଲା । ଉଠିଲାବେଳେ ଘଡ଼ଘଡ଼ ପରି ଯେଉଁ ଶବ୍ଦ ହେଲା ସେଥିରେ ଉତ୍‌କ୍ଷେପଣ କେନ୍ଦ୍ରଠାରୁ ୫ କିଲୋମିଟର ଦୂରରେ ଥିବା କୋଠାଘରମାନ ଦୋହଲି ଉଠିଲା । ୧୨୮ କିଲୋମିଟର ଉଚ୍ଚତାରେ ପହଞ୍ଚିଲା ବେଳକୁ ଏହାର ଗତିବେଗ ଥିଲା ଘଣ୍ଟାକୁ ୨୬,୭୦୦ କିଲୋମିଟର । ପ୍ରାୟ ୪୪ ମିନିଟ୍ ପରେ ଯାନଟି ତାର କକ୍ଷ ପଥରେ ଘୂରିଲା । ଯେଉଁ ବହିଃଟ ଟାଙ୍କିରେ ତରଳ ଜାଳେଣି ନିଆ ହୋଇଥିଲା ତାହା ଜଳି ଜଳି ଶେଷ ହୋଇଯିବାରୁ ଟାଙ୍କିଟି ଆପେ ଖସି ପଡ଼ି ବାୟୁ ମଣ୍ଡଳରେ ଘସି ହୋଇ ଜଳିଗଲା । କକ୍ଷରେ ପହଞ୍ଚିଲା ବେଳକୁ ଯାତ୍ରୀମାନେ କମ୍ପ୍ୟୁଟର-ଗୁଡ଼ିକୁ ତନଖି ନେଲେ । ଯାନର ଦ୍ୱାର ଖୋଲି ସହଜ ଚାପ ବଜାୟରଖିବାର ବ୍ୟବସ୍ଥା କଲେ ।

ଏହି ଐତିହାସିକ ଯାତ୍ରାକୁ ଲକ୍ଷ ଲକ୍ଷ ଲୋକ ଦୂରଦର୍ଶନରେ ଲକ୍ଷ୍ୟ କରୁଥିଲେ । ଉତ୍‌କ୍ଷେପଣ କେନ୍ଦ୍ରଠାରେ ସ୍ୱଚକ୍ଷୁରେ ଦେଖିବା ପାଇଁ ସେଦିନ ପ୍ରାୟ ୫୦ ଲକ୍ଷ ଦେଖଣାହାରୀ ରୁଣ୍ଡ ହୋଇଥିଲେ । ୧୯୬୯ରେ ପ୍ରଥମେ ଚନ୍ଦ୍ରଯାତ୍ରା କରିଥିବା ନିଲ୍ ଆର୍ମଷ୍ଟ୍ରଙ୍ଗ ଓ ଏଡ୍‌ୱାର୍ଡ଼ ଆଲ୍‌ଡ୍ରିନ୍ ମଧ୍ୟ ହଜାର ହଜାର ଆମନ୍ତ୍ରିତ ଅତିଥିଙ୍କ ଗହଣରେ ଆସନ ଗ୍ରହଣ କରିଥିଲେ ।

୨୦ ବର୍ଷ ତଳେ ଠିକ୍ ଏହିଦିନ (ଏପ୍ରିଲ-୧୨ରେ) ସୋଭିଏତ୍ ମହାକାଶ ଯାତ୍ରୀ ଗାଗାରିନ୍ ପ୍ରଥମେ ମହାକାଶକୁ ଉଠି ଗୋଟିଏ ଥର ପୃଥିବୀ ପ୍ରଦକ୍ଷିଣ କରି ନିରାପଦରେ ଫେରି ଆସିଥିଲେ । କିନ୍ତୁ ତାଙ୍କ ଯାନଟି ଜଳିପୋଡ଼ି ଛାରଖାର ହୋଇଯାଇଥିଲା । ୨୦ବର୍ଷ ପରେ ଆଜି କଲମ୍ବିଆ ୩୬ଥର ପୃଥିବୀ ପ୍ରଦକ୍ଷିଣ କରି ଯାତ୍ରୀଙ୍କୁ ନିରାପଦରେ ଧରି ନିଜେ ଅକ୍ଷୁଣ୍ଣ ରହି, ତାହାର ଯନ୍ତ୍ରପାତିକୁ ଅକ୍ଷତ ଓ ଅବିକୃତ ରଖି ଫେରି ଆସିଥିଲା ।

ଏବେଶିକ ତାକୁ ଯେଉଁ ତତ୍କ୍ଷେପୀରକେଟ ନେଇ କକ୍ଷରେ ଛାଡ଼ିବ ତାହା ଉତ୍କ୍ଷେପଣ କେନ୍ଦ୍ରଠାରୁ ୧୯୨ କିଲୋମିଟର ଦୂରରେ ଅଭୁଟ ଅବସ୍ଥାରେ ସମୁଦ୍ର ଗର୍ଭରେ ଖସି ପଡ଼ିବ । ସେଠି ଆଗରୁ ଦୁଇଟି ଜାହାଜ ଲଙ୍ଗର ପକାଇ ତାକୁ ଆଣିବାପାଇଁ ଅପେକ୍ଷା କରିଥିବେ ।

ରୁଷିଆ କଲମ୍ବିଆର ଏହି ଅପୂର୍ବ ସଫଳତା ପାଇଁ ସମ୍ବର୍ଦ୍ଧନା ଜଣାଇଲା । ତା ସଙ୍ଗେ ସଙ୍ଗେ ମନ୍ତବ୍ୟ କଲା "ପେଣ୍ଟାଗନ (ଆମେରିକାର ସାମରିକ ସଂସ୍ଥା) ଏଥିରୁ ଲାଭ ଉଠାଇବ। । ଏହା ସାହାଯ୍ୟରେ ଗୁପ୍ତଚର ଉପଗ୍ରହ ପଠାଯିବ । ଓଜନଦାର ସାମରିକ ଯନ୍ତ୍ରପାତି ପଠାଯାଇ ଭୟାବହ ରଣ କୌଶଳକୁ ଖରାପରୁ ଖରାପତର କରାଯିବ ।" ରୁଷିଆ ମତରେ ଏହା କଲମ୍ବିଆର ଏକ କବଳ ପଦକ୍ଷେପ । ଚୀନ ଓ ଅନ୍ୟ ପାଶ୍ଚାତ୍ୟ ରାଷ୍ଟ୍ରମାନେ ମନ୍ତବ୍ୟରେ ଗମ୍ଭୀରହୋଇ ନାସାକୁ ସାଧୁବାଦ ଜଣାଇଲେ ।

## ନିୟନ୍ତ୍ରିତ ଅବତରଣ

କଲମ୍ବିଆ ସେତେବେଳକୁ ଭାରତ ମହାସାଗର ଉପରେ ୨୬୭ କିଲୋମିଟର ଉଚ୍ଚତାରେ ଥାଏ । ଠିକ୍ ଘଣ୍ଟାକ ପରେ ସେ ଭୂଇଁରେ ଓହ୍ଲାଇବ । ଦୁଇଟି ଇଞ୍ଜିନ୍ କାର୍ଯ୍ୟକାରୀ ହୋଇ ଉଠିଲା । ୨-୧/୨ ମିନିଟ୍ ମଧ୍ୟରେ କଲମ୍ବିଆର ଗତିବେଗ ଘଣ୍ଟାକୁ ୨୮ ହଜାର କିମି: ରୁ ୨୫,୭୪୮ କିମି:କୁ କମି ଆସିଲା । ସେତେବେଳକୁ ଏହା ଉପରେ ବାୟୁମଣ୍ଡଳରେ ପ୍ରବେଶ କଲା । ଯୋଗାଯୋଗ କେନ୍ଦ୍ରକୁ ଅଧିନାୟକ ୟଙ୍ଗ୍ ଜଣାଇଲେ "ହ୍ୟୁଷ୍ଟନ୍, କଲମ୍ବିଆ ଏବେ ଓହ୍ଲାଉଛି ।" ହ୍ୟୁଷ୍ଟନ୍ କେନ୍ଦ୍ର ଉତ୍ତର ଦେଲା "କଲମ୍ବିଆ, ସବୁ ଠିକ୍ ଅଛି, ଓହ୍ଲାଇ ଆସ ।" ସେତେବେଳକୁ ବିମାନ ଘନ ବାୟୁମଣ୍ଡଳରେ ପ୍ରବେଶ କଲା । ତାପମାତ୍ରା ୧୪୮୨ ଡ଼ିଗ୍ରୀ ସେଣ୍ଟିଗ୍ରେଡ୍‌କୁ ଉଠିଲା । ବିମାନ ଚାରିପଟେ ଥିବା ବାୟୁ ତାତି ଆୟନିତ (ଗୁର୍ଜିତ) ହୋଇଗଲା । ନିୟନ୍ତ୍ରଣ କେନ୍ଦ୍ର ସହିତ ବେତାର ସଂଯୋଗ ଛିନ୍ନ ହୋଇ ପଡ଼ିଲା ।

କଲମ୍ବିଆ ଜଳିଯିବ ନାହିଁତ ? ସେଇ ଟାଇଲଗୁଡ଼ିକ କ'ଣ ଯାନକୁ ରକ୍ଷା କରି ପାରିବ ? ଅଘଟଣ ଘଟିଲେ ୟଙ୍ଗ ଓ କ୍ରିପେନ୍ କ'ଣ କରିବେ ? ଜନସନ୍ ମହାକାଶ କେନ୍ଦ୍ରରେ ଆତଙ୍କର ଛାୟା । ଅଭିଜ୍ଞ କର୍ମଚାରୀମାନେ

ନିଜ ଉପର ଆସ୍ଥା ହରାଇ ଡେବଳ ମୁହୂର୍ତ୍ତ ପରେ କଲମ୍ବିଆ ସଙ୍କେତ ଦେଲା । ଓହ୍ଲାଇଲା ଠିକ୍ ପୂର୍ବକଳ୍ପିତ ସ୍ଥାନରେ । ମୋଜାଭ ମରୁଭୂମିର ଏଡ୍‌ଓ୍ୱାର୍ଡ଼ସ ବିମାନବାହିନୀ ଘାଟି । ସେଜରସ ହ୍ରଦ କୂଳରେ କଲମ୍ବିଆର ଅବତରଣ । ପୂର୍ବ ନିର୍ଦ୍ଧାରିତ ସମୟଠାରୁ ୯ ସେକେଣ୍ଡ ବିଳମ୍ବ ହୋଇଛି । ଆମେ ଯିଏ ସବୁ ୯ଘଣ୍ଟା ବିଳମ୍ବରେ ସଭାରେ ପହଞ୍ଚୁ ତାଙ୍କୁ ଏ ବିଳମ୍ବ କଥା ଶୁଣି ହସ ମାଡ଼ିବ ।

ୟୁଙ୍ଗ ଗୋଟିଏ ବିରାଟ ଗ୍ଲାଇଡର ଚଳାଇଲା ପରି କଲମ୍ବିଆକୁ ଚଳାଉଥାନ୍ତି । ସମସ୍ତଙ୍କ ମୁହଁରେ ହସ ଫୁଟି ଉଠୁଥାଏ । ଏହି ଐତିହାସିକ ବିଜୟରେ ସବୁ କର୍ମଚାରୀ ଗର୍ବିତ । ଯାତ୍ରୀମାନେ ବିମାନ ମଧ୍ୟରେ ୪୫ ମିନିଟ୍ ଅପେକ୍ଷା କଲେ । ସେତେବେଳେ ଅନ୍ୟ କର୍ମଚାରୀମାନେ କଲମ୍ବିଆ ଦେହରୁ ଧୂଳି ଝାଡ଼ି ଦେଉଥାନ୍ତି । ରୁଷିଆର ବୈଜ୍ଞାନିକମାନେ କଲମ୍ବିଆର ଅବତରଣ ଲକ୍ଷ୍ୟ କରୁଥିଲେ । ଅବତରଣର ୧୫ ମିନିଟ୍ ପରେ ସେମାନେ ମନ୍ତବ୍ୟ କଲେ "କଲମ୍ବିଆର ସଫଳତାରେ ବୈଜ୍ଞାନିକ ଗୁରୁତ୍ୱ କିଛି ନାହିଁ କିନ୍ତୁ ସାମରିକ ଦୃଷ୍ଟିରୁ ଏହା ଗୁରୁତ୍ୱପୂର୍ଣ୍ଣ ।"

## ପରବର୍ତ୍ତୀ ବିମାନ

କଲମ୍ବିଆ ବର୍ଷକ ମଧ୍ୟରେ ୪ଥର ଯିବ । ଏବେ ଖବରକାଗଜରେ ବାହାରିଥିଲା ୪ଥର ପାଇଁ କଲମ୍ବିଆ ମହାକାଶକୁ ଯିବ । ଅର୍ଥାତ୍ ଏହା ଭିତରେ ସେ ତିନିଥର ଯାଇସାରିଲାଣି । ଏତେଥର ଯିବା ଆସିବା କରିବାରେ କ'ଣ ହେଲା, କ'ଣ ମିଳିଲା ସବୁ ଗୁପ୍ତ ରଖା ଯାଇଛି । ତେଣୁ ରୁଷିଆର ସନ୍ଦେହ ଯଥାର୍ଥ । ଆମେରିକା ବୈଜ୍ଞାନିକମାନେ କହନ୍ତି କଲମ୍ବିଆ ସାହାଯ୍ୟରେ ମହାକାଶକୁ ଉଠି ବାୟୁମଣ୍ଡଳର ଊର୍ଦ୍ଧ୍ୱରେ ଅନେକ ଗୁରୁତ୍ୱପୂର୍ଣ୍ଣ ବୈଜ୍ଞାନିକ ଗବେଷଣା କରିହେବ । ବିଶ୍ୱ ସମ୍ବନ୍ଧରେ ଅନେକ ନୂତନତାର ସନ୍ଧାନ ମିଳିବ । ହୋଇପାରେ, କିନ୍ତୁ ଏହା ସଙ୍ଗେ ସଙ୍ଗେ ସାମରିକ ବିପଦ ଆଶଙ୍କାକୁ ବଢ଼ାଇ ଦେବ ।

ନାସା (NASA)ର ମୁଖ୍ୟଯନ୍ତ୍ରୀ ଉଇଲିୟମ ଗୋଲ୍‌ଡ଼ସବ କହନ୍ତି "କଲମ୍ବିଆରୁ ଆମେ ଯାହା ଆଶା କରିଥିଲୁ ତାହା ପାଇଲୁ ନାହିଁ ।" ଏହା

ପୂର୍ବ ଉପକୂଳରୁ ୨୫ ହଜାର କେଜି ଓ କାଲିଫର୍ଣ୍ଣିଆରୁ ମାତ୍ର ୧୧ ହଜାର କେଜି ମାଲ ଉଠାଇ ପାରୁଛି । ଏହା ୩୦ ହଜାର କେଜି ମାଲ ଉଠାଇବା କଥା । ତେଣୁ ସେମାନେ ଆଜି ତନୋଟି ମହାକାଶ ବିମାନ ତିଆରି କରିଛନ୍ତି ।

କଲମ୍ବିଆରେ ଖର୍ଚ୍ଚ ହୋଇଛି ୧୦ ହଜାର କୋଟି ଟଙ୍କା । ତଥାପି ଅନ୍ୟପ୍ରକାର ମହାକାଶଯାନର ଖର୍ଚ୍ଚ ସହିତ ତୁଳନା କଲେ ଏହି ପୁନଃ ବ୍ୟବହାର ଯୋଗ୍ୟ ବିମାନର ଖର୍ଚ୍ଚ ଅନେକଗୁଣ କମ୍ ।

ଆମ ଅଗ୍ରଣୀ ଦେଶମାନେ ଏ ଖର୍ଚ୍ଚର ଶସ୍ତା ମହଙ୍ଗର ଗୁଣ ବିଷୟରେ ଧାରଣା କରି ପାରିବା ନାହିଁ । ଆମେ କେବଳ ଏତିକ ବୁଝୁଛୁ ଯେ ଏଫ୍-୧୬ର କାରବାର ଆମକୁ ଘୁଣିଆ କରି ସାରିଲାଣି, କଲମ୍ବିଆ ପରି ମହାକାଶ ବିମାନର ଯଦି ସାମରିକ ଗୁରୁତ୍ୱ ଅଛି ତାହାହେଲେ ତା ପାଇଁ ଆମେ କ'ଣ କରିବୁ ?



# ତାରକା-ଯୁଦ୍ଧ

ଥରେ ରେଗନ୍ ଓ ଗୋର୍ବାଚ୍ଚେଭ ମିଳିତ ହୋଇଥିଲେ । ସେମାନଙ୍କ ମନରେ କ'ଣ ଥିଲା କେଜାଣି ଆମେ କିନ୍ତୁ ବହୁତ କିଛି ଆଶା କରିଥିଲୁ । ଦୁନିଆ ଲୋକଙ୍କର ବିଶ୍ୱାସ, ଋଷିଆ ଓ ଆମେରିକା ହାତ ମିଳେଇଲେ ଏ ପୃଥିବୀ ଥଣ୍ଡା ପଡିଯାନ୍ତା । କାରଣ ବଡ଼ବଡ଼ିଆ ଲୋକଙ୍କ ମନ ନମିଳିଲେ ସାନ ମଣିଷଗୁଡ଼ାକ ବେଶି ଭୋଗନ୍ତି । ସେମାନେ ଖାଲି ପଡ଼ନ୍ତି ନାହିଁ ସିନା; କିନ୍ତୁ ଅନ୍ୟକୁ ଉସୁକାଇ ମତାଇ, ହାତ ହତିଆର ଯୋଗାଇ ଦେଇ ଦେଶକୁ ଉଚ୍ଛନ୍ନ କରନ୍ତି । ବଡ଼ଲୋକମାନେ ଭଲଲୋକ ଦେଖାଇ ହେଲା-ବେଳେ ତାଙ୍କ ଗୋଡ଼ାଣିଆମାନେ ଯାହା ତାହା କରିବସନ୍ତି । ତେଣୁ ପୃଥିବୀବାସୀ ଈଶ୍ୱରଙ୍କୁ ନିବେଦନ କରୁଥିଲେ "ହେ ସୃଷ୍ଟିକର୍ତ୍ତା ! ସୃଷ୍ଟିର ମଙ୍ଗଳ ପାଇଁ ଏମାନଙ୍କୁ ଟିକଏ ସଦ୍‌ବୁଦ୍ଧି ଦିଅ ।"

କିନ୍ତୁ ହେଲା ନାହିଁ; ସମସ୍ତ ଆୟୋଜନ ଫସର ଫାଟିଗଲା । ଖବର କାଗଜ ସବୁ ଲେଖିଲା—ପରମାଣୁ ଯୁଦ୍ଧର ଅବସାନ ଘଟାଇବାକୁ ସେମାନେ ଏକ ପ୍ରକାର ରାଜି ହୋଇଥିଲେ, କିନ୍ତୁ ତାରକା-ଯୁଦ୍ଧ ପାଇଁ ସବୁ ବିଗିଡ଼ି ଗଲା । ତାରକା ଯୁଦ୍ଧର ପ୍ରସ୍ତୁତି ବନ୍ଦ କରିବାକୁ ରେଗନ ରାଜି ହେଲେ ନାହିଁ । ଗୋର୍ବାଚ୍ଚେଭ ଜିଦ୍ ଧରିଲେ । ଫଳରେ ସବୁ ବିଗିଡ଼ି ଗଲା । ଗୋର୍ବାଚ୍ଚେଭ ରାଗି ଯାଇ ଘୋଷଣା କଲେ ଏକା ତରଫା ଭାବେ ସେ ଯେଉଁ ଆଣବିକ ପରୀକ୍ଷା ବନ୍ଦ କରିଛନ୍ତି, ଏବେ ତାହା ପୁଣି ଚାଲୁ ହେବ । କେବଳ ସେତିକି ନୁହେଁ ପୁଣି ବାହାସ୍ଫୋଟ ମାରି କହନ୍ତି ଋଷିଆ ତାରକା-ଯୁଦ୍ଧକୁ ଖାତିର କରେ ନାହିଁ । ତେବେ ଖାତିରି କରୁନଥିବା ତାରକା ଯୁଦ୍ଧର ପ୍ରସ୍ତୁତିକୁ ସେ କାହିଁକି ପରମାଣୁ ଯୁଦ୍ଧର ଅବସାନ ପାଇଁ ସର୍ତ୍ତ ରଖିଲେ

ତାହା ତାଙ୍କୁ ହିଁ ଜଣା । ଗଣ୍ଡିକୁ ଗଣ୍ଡିଆ ଶବ୍ଦେ । ପରେ ସାମ୍ବାଦିକମାନେ ତାଙ୍କୁ ନିଷ୍ଠୁର ଉଖାରି ବାହାର କରିବେ ।

ପ୍ରକୃତରେ କ'ଣ ସେ ତାରକା ଯୁଦ୍ଧ ? ଯାହାକୁ ନେଇ ଏତେ ବଡ଼ କାଣ୍ଡ ଘଟିଗଲା । ଆମେ ଜଳ ସ୍ଥଳ ଓ ଆକାଶ ଯୁଦ୍ଧ କଥା ଢେର ଅଧିକେ ଜାଣିଛୁ । ସୃଷ୍ଟି ଆରମ୍ଭରୁ ଏ ଯୁଦ୍ଧର ସୃଷ୍ଟି । ପ୍ରକୃତରେ ଜୀବନ ଏକ ସଂଗ୍ରାମ ବା ଯୁଦ୍ଧ । ଆଶ୍ଚର୍ଯ୍ୟର କଥା ଯେଉଁ ସଂଗ୍ରାମ ଭିତରେ ଜୀବନ ତିଷ୍ଠି ରହେ, ଜୀବ ଅନବରତ ସେଇ ସଂଗ୍ରାମକୁ ଏଡ଼ି ଟିକିଏ ଶାନ୍ତି ପାଇଁ ବ୍ୟାକୁଳ । ଏହି ସଂଗ୍ରାମ ବ୍ୟକ୍ତିର ସୀମା ଟପି ଯେତେବେଳେ ଗୋଷ୍ଠୀ ଗୋଷ୍ଠୀ, ଜାତି ଜାତି ବା ଦେଶ-ଦେଶ ମଧ୍ୟରେ ତାହାର କାୟା ବିସ୍ତାର କରେ ତାହା ସମର, ମହାସମର ବା ବିଶ୍ୱଯୁଦ୍ଧରେ ପରିଣତ ହୁଏ । ତେଣୁ ଖ୍ରୀଷ୍ଟିୟାନ ଜଗତର ମହାମାନ୍ୟ ପୋପ୍ ଖ୍ରୀଷ୍ଟ ମାସ ପର୍ବରେ ବିଶ୍ୱଶାନ୍ତି ପାଇଁ ତାଙ୍କର ବାର୍ଷିକ ନିବେଦନ କରନ୍ତି, ଶାନ୍ତି ସ୍ତୂପ ଉପରେ ବସି ଲଣ୍ଡିତ ମସ୍ତକ ବୌଦ୍ଧ ଭିକ୍ଷୁ ବର୍ଷ ସାରା ପ୍ରେମ ଓ ଅହିଂସାର ବାଣୀ ପ୍ରଚ୍ଚାର କରନ୍ତି, ଯାଗ ଯୋଗ ଦେଖି ବସିବାଲାମାନେ ବିଶ୍ୱ ଶାନ୍ତି ଉଦ୍ଦେଶ୍ୟରେ ସପ୍ତାହ ବ୍ୟାପୀ ମହାଯଜ୍ଞର ଆୟୋଜନ କରନ୍ତି । ଏସବୁ ରେଗନ୍ ବା ଗୋର୍ବାଚେଭଙ୍କ ମନରେ ଟିକିଏ ବି ଆଲୋଡ଼ନ ସୃଷ୍ଟି କରେନା । ଯୁଗକୁ ଯୁଗ ସେମାନଙ୍କ କବରର ନୂଆ ନୂଆ ଜନନାୟକ ଅଧିକ କଠୋର ଓ ନିର୍ଦ୍ଦୟ ହୋଇ ଅବତୀର୍ଣ୍ଣ ହୁଅନ୍ତି । ଏହିପରି ଯୁଦ୍ଧ ଓ ଶାନ୍ତିର ଲୁଚକାଳି ସୃଷ୍ଟି ସହିତ ଆବହମାନ କାଳରୁ ଜଡ଼ିତ ହୋଇରହିଛି । ସୃଷ୍ଟିର ତାଣ୍ଡବର ଲାଘବ କରିବା ପାଇଁ କେବେ କେମିତି ସିନା ମହାପୁରୁଷ ଅବତୀର୍ଣ୍ଣ ହୁଅନ୍ତି; କିନ୍ତୁ ଜନନାୟକ ରୂପରେ ଯେଉଁ କାଳ ପୁରୁଷମାନେ ଜନସମାଜକୁ ବିଭ୍ରାନ୍ତ କରନ୍ତି ସେମାନଙ୍କ ପ୍ରାଦୁର୍ଭାବ ସଦାସର୍ବଦା ଏ ବିଶ୍ୱରେ ପୂର୍ଣ୍ଣମାତ୍ରାରେ ପ୍ରକଟିତ । ଏଇମାତ୍ର କେଇଦିନ ତଳେ ରେଗନ୍ ତାଙ୍କ ତାରକାଯୁଦ୍ଧ ଯୋଜନାକୁ ଆହୁରି ଭୟଙ୍କର କରିବା ପାଇଁ ଆମେରିକା କଂଗ୍ରେସକୁ ଅଧିକ ୨୫୦୦ କୋଟି ଟଙ୍କା ଦେବା ପାଇଁ ଅନୁରୋଧ କରିଥିଲେ । ଟିକିଏ ବାଦାନୁବାଦ ହୋଇଥିଲା । କିନ୍ତୁ ମିଳିଗଲା । ଏଭଳି ମହାର୍ଘ ଯୋଜନା ଗ୍ରହଣ କରିବାରେ କ'ଣ କେବଳ ଜଣେ ରେଗନର ହାତ ଥାଏ ? ଜଣେ ନେତୃତ୍ୱ ନେଇଥାଇପାରେ, କିନ୍ତୁ ଏହା ପଛରେ ହଜାର ହଜାର ବ୍ୟକ୍ତିଙ୍କର ମୁଣ୍ଡ, ହାତ ଓ କଠୋର ହୃଦୟ କାମ ନକଲେ

ଏ କୁତ୍ସିତ ଯୋଜନା କାର୍ଯ୍ୟକାରୀ ହୋଇପାରିବ ନାହିଁ । ୧୯୮୭ର ଭାରତୀୟ ବିଜ୍ଞାନ କଂଗ୍ରେସରେ ତାରକା ଯୁଦ୍ଧ ପ୍ରକଳ୍ପର ନିନ୍ଦା କରାଯାଇଛି । ଏମିତ ହେଲେ ଏହା ବିରୋଧରେ ପ୍ରବଳ ଜନମତ ସୃଷ୍ଟି ହେବ ସତ; କିନ୍ତୁ ନିରୀହ ଜନମତ କ'ଣ ସତରେ ଏହି କାଳପୁରୁଷମାନଙ୍କୁ ତାଙ୍କ ଧ୍ୱଂସକାରୀ ପଥରୁ ନିବର୍ତ୍ତାଇ ପାରିବ ?

ତାରକା ଯୁଦ୍ଧ ପ୍ରକୃତରେ ଅନ୍ତରୀକ୍ଷ ବା ମହାକାଶ ଯୁଦ୍ଧ । ମଣିଷ ତିଆରି ଯେଉଁ ଉପଗ୍ରହଗୁଡ଼ିକ ଆମ ଆକାଶରେ ତାରକା ପରି ଘୂରି ବୁଲୁଛନ୍ତି ସେମାନେ ଏହି ଯୁଦ୍ଧରେ ସକ୍ରିୟ ଅଂଶ ଗ୍ରହଣ କରିବେ । ଏହି ତଥାକଥିତ ତାରକାଗୁଡ଼ିକ ଏକ ଭୟଙ୍କର ଯୁଦ୍ଧର ଲୀଳା କ୍ଷେତ୍ର ହେଉଥିବାରୁ ଏହାକୁ ତାରକା ଯୁଦ୍ଧ କୁହାଯାଉଛି । ପୃଥିବୀପୃଷ୍ଠରୁ ହଜାର ହଜାର କିଲୋମିଟର ଦୂରରେ ସଜବାଜ ହୋଇ ଘୂରୁଥିବେ ଏହି ତାରକା-ମାନେ । ସେମାନଙ୍କ ମଧ୍ୟରେ ମଣିଷ ଥାଇ ପାରନ୍ତି ନଥାଇ ପା'ରନ୍ତି । କିନ୍ତୁ ଖଞ୍ଜା ହୋଇଥିବ ଜଟିଳ ଯନ୍ତ୍ରପାତି । ସେହି ଯନ୍ତ୍ରଗୁଡ଼ିକ ସୁପରିକଳ୍ପିତ କଂପ୍ୟୁଟର ନିର୍ଦ୍ଦେଶରେ ଚାଲୁଥିବ । ସେହି ଯନ୍ତ୍ରଗୁଡ଼ିକ ନିର୍ମାଣ କରିବ ହେଲେ ବି ରୁଷିଆ ଓ ଆମେରିକାର ଶକ୍ତି ପାରିବେ । କିଏ ମିତ୍ର ପକ୍ଷ କିଏ ଶତ୍ରୁପକ୍ଷ ତାହା ବାରି ପାରୁଥିବେ । ଏଭଳି ଯୋଜନା ହୋଇଥିବ ଯେ କୌଣସି ତାରକା ବାଟବଣା ହେଲେ ତାହା ପୃଥିବୀରୁ ନୂଆ ନିର୍ଦ୍ଦେଶ ଗ୍ରହଣ କରି ପାରିବେ । ଏମାନେ ଶତ୍ରୁପକ୍ଷର ଭଲମନ୍ଦ ଖବର ଯୋଗାଇବା ସଙ୍ଗେ ସଙ୍ଗେ ଶତ୍ରୁ ପକ୍ଷର ତାରକାମାନଙ୍କୁ ବିଭ୍ରାନ୍ତ କରି ପାରିବେ କିମ୍ବା ସମ୍ଭବ ହେଲେ ଧ୍ୱଂସ କରି ଦେବେ । ଏଥିପାଇଁ ସେମାନଙ୍କଠାରେ ମହଜୁଦ୍ ଥିବା ପରମାଣୁ ଚାଳିତ କ୍ଷେପଣାସ୍ତ୍ର କିମ୍ବା ପ୍ରଳୟଙ୍କରୀ ଲେଜର ରଶ୍ମି । ଏହାଦ୍ୱାରା ଶତ୍ରୁପକ୍ଷର ଯାନବାହନ, ଶିଳ୍ପାଞ୍ଚଳ, ପରମାଣୁ କେନ୍ଦ୍ର ଓ ସୁପର କଂପ୍ୟୁଟରଗୁଡ଼ିକୁ ଅଚଳ କରି ଦିଆଯିବ । ଏହି ତାରକାଗୁଡ଼ିକ ମହାକାଶରେ ଘୂରି ଘୂରି ଶତ୍ରୁର ଆକ୍ରମଣ ସଙ୍କେତ ଦେଇ ସୀମା ସୁରକ୍ଷା କରିବେ ଏବଂ ସ୍ୱୟଂଚାଳିତ ବ୍ୟବସ୍ଥା ଦ୍ୱାରା ଦ୍ରୁତ ଆକ୍ରମଣ କରିବାକୁ ପ୍ରସ୍ତୁତ ହୋଇଯିବେ ।

ଏଭଳି ଯୁଦ୍ଧର ସୂତ୍ରପାତ ହେଲେ କିଏ ଯୁଦ୍ଧ ବୁଝୁଛି କିଏ ନ ବୁଝୁଛି ତା'ର ପ୍ରଶ୍ନ ନାହିଁ । ମେଘ ଭିତରେ ଲୁଚିଛପି ମେଘ ନାଦ କରିବ

ରାମଚନ୍ଦ୍ର ଓ ଲକ୍ଷ୍ମଣଙ୍କ ପରି ଧନୁର୍ଦ୍ଧର ବୀରଙ୍କୁ ବିବ୍ରତ କରିଦେଲ ବୋଲି ପ୍ରବାଦ ଅଛି । କିନ୍ତୁ ଆମେରିକା ଆଜି ଯେଉଁ ଅସ୍ତ୍ରଭେଦର ବ୍ୟବସ୍ଥା କଲଣି ତାହା ମେଘଠାରୁ କାହିଁ କେତେ ଉଚ୍ଚରେ । ଝରି ବାଣରୁ ଅଗ୍ନିକଣା ଝରିଲି ପରି ତାରକା ଯୁଦ୍ଧରୁ ଯେଉଁ ମହାକାଶୀୟ ତେଜସ୍କ୍ରିୟ ଭସ୍ମ ଝରିବ ତାହାର ସ୍ତୂପ ଭିତରେ ଇରାକ ଇରାନ ବା ଭାରତ ପାକିସ୍ତାନ ଏକାକାର ହୋଇଯିବେ । ଆମେରିକାର ଯୁକ୍ତି—ଅସ୍ତ୍ର ଯେତେ ଭୟଙ୍କର ହେବ, ଯୁଦ୍ଧ ସେତେ ଦୂରେଇ ଯିବ । ଏହା ସତ ହୋଇପାରେ; କିନ୍ତୁ ଏକ ପାଗଳାମି । ଯୁଦ୍ଧକୁ ଦୂରେଇ ଦେବା ଯଦି ଲକ୍ଷ୍ୟ ତାହା କ'ଣ ବିନା ଅସ୍ତ୍ରରେ ହାସଲ କରି ହେବ ନାହିଁ ? ସାଧାରଣ ଲୋକ ସାଧାରଣ ରୋଗରେ ପୋକମାଛି ପରି ମଲାବେଳେ, ପିଇବାକୁ ଭଲ ପାଣି ମଧ୍ୟ ପାଉ ନଥିବା ବେଳେ କୋଟି କୋଟି ଟଙ୍କା ଖର୍ଚ୍ଚ କରି ଆମେ ଅଧିକ ମାରାତ୍ମକ ଅସ୍ତ୍ର ପଛରେ ଧାଇଁବା କାହିଁକି ?

ଏବେ କ'ଣ ଆମ ଅସ୍ତ୍ର କମ୍ ମାରାତ୍ମକ ହୋଇଛି ? ଏବେ ପୃଥିବୀରେ ବର୍ଷକୁ ଯୁଦ୍ଧ ଖର୍ଚ୍ଚ ୧୦ ଲକ୍ଷ କୋଟି ଟଙ୍କା । ଅନାହାରରେ ଏକ ମିନିଟରେ ୩୦ଟି ଶିଶୁ ମରୁଥିଲାବେଳେ ଆମେ ଗୁଳିଗୋଳା ସାଇତିବା ଓ ସୈନ୍ୟଙ୍କ ପିଛା ପ୍ରତି ମିନିଟ୍‌ରେ ପ୍ରାୟ ଦେଢ଼ କୋଟି ଟଙ୍କା ଖର୍ଚ୍ଚ କରୁ । ଗୋଟିଏ ହିରୋସିମା ବୋମାରେ ହଜାର ହଜାର ଓ ଲକ୍ଷ ଲକ୍ଷ ବିକଳାଙ୍ଗ ହୋଇଥିଲେ । ଏହି ବୋମାଠାରୁ ହଜାର ହଜାର ଶକ୍ତିଶାଳୀ ବୋମା ତିଆରି ହେଲଣି । ଏଭଳି ଭୟଙ୍କର ବୋମା ପୃଥିବୀରେ ଏବେ ବି ପଚିଶ ହଜାର ଗଚ୍ଛିତ ଅଛି । ଏଥିରେ କେବଳ ଥରେ ନୁହେଁ ପୃଥିବୀକୁ ଅନେକ ଥର ଧ୍ୱଂସ କରି ହେବ । ପୃଥିବୀରେ ଏତେ ବୋମା ମହଜୁଡ ଥିଲା ବେଳେ ପାକିସ୍ଥାନ ତା' ନିଜର କେତୋଟି ତିଆରି କରିବାକୁ ବ୍ୟସ୍ତ । ପଚୁରିଲେ କୁହା ହେଉଛି ଅଜାଙ୍କ ନିଶକୁ ନାତି ଆଉ କେତେ ଦିନ ସାଉଁଳେଇବ ନାତିର ବି ହଲେ ଦରକାର । ଏବେ ସମସ୍ତେ ନିଶରଖାରେ ମାତିଛନ୍ତି, କଥା ହେଉଛି ସମସ୍ତେ ନିଶରଖିଲେ ନିଶ ଦେଖାଇବେ କାହାକୁ ? ସେମାନେ ବୋଧହୁଏ ଧରି ନେଇଛନ୍ତି ଦେଖଣାହାରୀର ଅଭାବ ରହିବ ନାହିଁ । ଏବେ ବି ସମୟ ଅଛି, ଏହି ନିଶୁଆମାନେ ଭାବନ୍ତୁ ସେମାନଙ୍କ ନିଶ-ନିଶାରେ ଏ ପୃଥିବୀ କିପରି ଛାରଖାର ହେବାକୁ ବସିଲାଣି ।

●

# ତାଙ୍କ ଖେଳ ଆମକୁ କାଳ

## ନିଷ୍ଠୁର ଖେଳ

ସେ ଦିନ ସାଙ୍ଗ ପିଲାଏ ଏକାଠି ମିଳି ପୋଖରୀ କୂଳରେ ବେଙ୍ଗମାନଙ୍କୁ ଲକ୍ଷ୍ୟକରି ଟେକା ଫିଙ୍ଗୁଥିଲେ । ଟେକା ମାଡ଼ରେ ଗୋଟିଏ ଗୋଟିଏ ବେଙ୍ଗ ଟଳିପଡ଼ି ଯେତେବେଳେ ଖଣ୍ଡି ପଦାଁର ଦେଉଥିଲେ ପିଲାଙ୍କ ଆନନ୍ଦ ଦେଖେ କିଏ ? ହୋ ହା ହସ ଓ ଠୋ ଠା କରତାଳି ମଧ୍ୟରେ ପୋଖରୀ କୂଳ ଖାଲି କମ୍ପୁଥିଲା । ସେତିକିବେଳେ ଗଡ଼ିଆ ପାଣିରୁ ବୁଢ଼ା ବେଙ୍ଗଟିଏ ମୁଣ୍ଡଟେକି ପାଟି ପାଲୁ ପାଲୁ କରି କହିଥିଲା—"ପିଲାଏ, ତମେ ବୁଝିପାରୁ ନାହଁ, ତମର ଯାହା ଖେଳ ମୋ ଗୋଷ୍ଠି କୁଆଙ୍କୁ ତାହା କାଳ ।" ମୂର୍ଖର କଥା ପିଲାମାନେ ବୁଢ଼ା ବେଙ୍ଗ କଥା ମାନି ଖେଳ ବନ୍ଦ କଲେ । ଅବୋଧ ଶିଶୁମାନଙ୍କର ନିଷ୍ଠୁର ଆନନ୍ଦରେ ପୂର୍ଣ୍ଣଚ୍ଛେଦ ପଡ଼ିଲା । କିନ୍ତୁ ଆମେ—ବୁଝିଲା ଶୁଝିଲା ଲୋକମାନେ—ଏବେ ବି ଖେଳୁଛୁ ସେଇ ନିଷ୍ଠୁର ଖେଳ । ଜାଣିଲେ ବି ସେଥିରୁ ନିବୃତ୍ତ ହେଉ ନାହୁଁ ।

## ରେଡ଼ିଓ ରଢ଼ି

ଶୁଣନ୍ତୁ ଶ୍ୟାମ ସୁନ୍ଦର ବାବୁଙ୍କ କଥା——ଘରେ ତାଙ୍କର ଅଛି ଦି ଦି'ଟା ଟ୍ରାଞ୍ଜିଷ୍ଟର, ଗ୍ରାମୋଫୋନ, ଟେପ୍‌ରେକର୍ଡ଼ର, ଟେଲିଭିଜନ ଇତ୍ୟାଦି । କେବଳ ତାଙ୍କ ପୁରୁଣା ରେଡ଼ିଓଟି ବିଗିଡ଼ି ଯାଇଥିଲା । ସେତିକି ପାଇଁ ଘରଣୀ ବିଗିଡ଼ି ଗଲେ, ପିଲାଏ ଅଳି କଲେ, ବଡ଼ପୁଅ ଅଡ଼ି ବସିଲା "ଆମର ଆଜି ରେଡ଼ିଓ ଆସିବ । ଏ ମହଲା ଘରମାନଙ୍କରେ ସମସ୍ତଙ୍କର ରେଡ଼ିଓ କାନ ଅତଡ଼ା ପକାଇବ, ଆମେ ଖାଲି ଘର କୋଣରେ ମୂଷାଙ୍କ ପରି ଟ୍ରାଞ୍ଜିଷ୍ଟର ପାଖରେ ଜାକିଜୁକି ହୋଇ ବସିଥିବୁ ।" ଘରଣୀ ବି ତାଳ ଦେଲେ "କିଏ

ଯାଙ୍କୁ ଅଫିସ ବଡ଼ବାବୁ କଲ କେଜାଣି ? ଇଏ ସେପରି କୃପଣ ଓ ଗ୍ଲେଟ ଲୋକନା, ମୋ ପିଲାଏ ଆଜ ଦାଣ୍ଡରେ ମୁଣ୍ଡ ଟେକି ବାଟ ଚାଲି ପାରିବେ ନାହିଁ ।" ଘରଣୀଙ୍କ 'କୃପଣ' କଥାଟା ଶ୍ୟାମବାବୁଙ୍କୁ ବଡ଼ ବାଧିଲା । ସେହିଦିନ ମାସକ ଦରମାର ଅଧାଅଧି ଦେଇ ସେ ବଜାରରୁ ଦୁଇ ପିକର ବାଲ ବଡ଼ ରେଡ଼ିଓଟିଏ କିଣି ଆଣିଲେ । ସେଇ ରେଡ଼ିଓ ବାଜିବା ଆଗରୁ ତାଙ୍କ ପିଲାଏ ଆନନ୍ଦରେ ରଡ଼ି ଛାଡ଼ିଲେ, ସେଥିରେ ତାଙ୍କ ପଡ଼ିଶା ନିତ୍ୟାନନ୍ଦ ବାବୁଙ୍କ ଘରେ ଏକ ଆତଙ୍କ ଖେଳିଗଲା । କାରଣ ତାଙ୍କ ଘରେ ବହୁକୁଟୁମ୍ବ, ପୁଅ ମାଟ୍ରିକ ପରୀକ୍ଷା ଦେବ, ଝିଅର ଏମ୍. ଏ. ପରୀକ୍ଷା, ରୋଗିଣୀ ମା ବୁଢ଼ୀଙ୍କୁ ନିଦ ହେଉନି, ସେ ଦିନରାତି ଯନ୍ତ୍ରଣାରେ ଖାଲି ଛଟପଟ ହେଉଛନ୍ତି । ଏହା ସାଙ୍ଗକୁ ପୁଣି ସହଯୋଗ କରି ଗର୍ଜି ଉଠିବ ଶ୍ୟାମ ବାବୁଙ୍କ ରେଡ଼ିଓ । ବୁଢ଼ାବେଙ୍ଗ କଥା ସିନା ପିଲାଏ ଶୁଣିଥିଲେ ଶ୍ୟାମ ବାବୁ କଅଣ ନିତ୍ୟାନନ୍ଦ ବାବୁଙ୍କ ଦୁଃଖ ବୁଝିବେ ?

## ହାଟରେ ବ୍ରହ୍ମଜ୍ଞାନ

ଗାଁ ଗହଳର ସନାତନ ଯେତେବେଳେ କଲେଜ ପଢ଼ା ପାଇଁ ସହରକୁ ଆସିଲା ଛାତ୍ରାବାସରେ ତାକୁ ରାତି ଯାକ ନିଦ ହୋଇ ନଥିଲା । ଗାଁର ମୋହ ବା ମା'ର ସ୍ନେହ ତା' ମନକୁ ଭିଡ଼ି ଧରୁ ନଥିଲା । ସହରର ପେଁ ପାଁ ସ୍ୱର ଓ ଦୋକାନୀଙ୍କ ଭଡ଼ାଟିଆ ଲଉଡ଼ ସ୍ପିକର ଧ୍ୱନି ତା ମନକୁ ବେଶି ଟାଣି ନେଉଥିଲା । ସେ ଦେଖିଲା "ହାଟ ମଧ୍ୟେ ବ୍ରହ୍ମଜ୍ଞାନ ଶିକ୍ଷା କୌଶଳ" ଯାହାକୁ ମାଲୁମ ନଥିବ ତାହା ପକ୍ଷେ ସହରରେ ବିଦ୍ୟାଧ୍ୟୟନ ଏକ ବିଡ଼ମ୍ବନା ।

ଆଗରେ ସ୍କୁଲ ପିଲାଏ ପଢ଼ୁଛନ୍ତି । ବାଁ କଡ଼ରେ ଡାକ୍ତରଖାନା, ରୋଗୀମାନେ ବିଶ୍ରାମ ନେଉଛନ୍ତି । ରାସ୍ତା କଡ଼ରେ ସତର୍କତା ସଙ୍କେତ "ଧୀରେ ଗାଡ଼ି ଚଲାନ୍ତୁ, ଆସ୍ତେ ହର୍ଣ୍ଣ ବଜାନ୍ତୁ" । କିଏ ମାନୁଛି ସେ ସଙ୍କେତ ବରଂ ଦୁଇଜଣ ଉଚ୍ଛୃଙ୍ଖଳ ଯୁବକ ଫଟଫଟିଆ ରାଜଦୂତରେ ବସି ଗଲାବେଳେ ଜଣେ ମୋଡ଼ି କହୁଥିଲେ "ରାସ୍ତାରେ ପେଁ ପାଁ, ଘୁଁ ଘାଁ ଶବ୍ଦ ହେବନି ତ, କ'ଣ ବଣ ଜଙ୍ଗଲରେ ହେବ ? କିଏ କହୁଥିଲା ଯାଙ୍କୁ ରାସ୍ତା କଡ଼ରେ ସ୍କୁଲ ଓ ଡାକ୍ତରଖାନା ଖୋଲିବାକୁ ? ଏମାନେ ଯିବ ଦୁନିଆରେ

ସମସ୍ତଙ୍କୁ ରୋଗୀ ବା ସ୍କୁଲ ପିଲା କରିଦେବେ । ଟିକିଏ ମନ ଖୁସିରେ ରାସ୍ତା ଚଲେଇ ଦେବେ ନା ହୋ" ।

## ଉତ୍କଟ ଅସାମାଜିକତା

ଏହା ଠିକ୍ କଥା । ଆଜି ଆମେ ସମସ୍ତେ ମନଖୁସିରେ ବେପରୱା ଭାବେ, ନିୟମ କାନୁନ ପ୍ରତି ଆଖି ବୁଜି ଦେଇ ବାଟ ଚାଲୁଛୁ । ଆମେ ରାସ୍ତାରେ ଅଣନିଃଶ୍ୱାସୀ ହେଲୁଣି । ଆଗରେ ଶେଠଜୀଙ୍କ ମାନ୍ଦ୍ରାଜି ଟକ୍; ସେଥିରେ ଚାଳକ ସର୍ଦ୍ଦାରଜୀ; ମହା ମଉଜରେ ଧୂଆଁ ଓ ଧୂଳି ଉଡ଼ାଇ ଚାଲିଛନ୍ତି । ପଛବାଲା ବି ପେଁ ପାଁ ଶବ୍ଦ କରୁଛନ୍ତି ଆମକୁ କଟେଇ ଯିବାକୁ । ଆମେ ବା ଯାଉଛୁ କେଉଁଠି ?

ଠିକ୍ ସେଇପରି ଦୁନିଆରେ ସ୍ୱରମାନଙ୍କର ପ୍ରତିଦ୍ୱନ୍ଦ୍ୱିତା ନବଜାତକର କୁଆଁ କୁଆଁ ରବ, ବିଧବାର ବିଳାପ ଧ୍ୱନି, ଭିକାରୁଣୀର କରୁଣ ଚିତ୍କାର, ଟ୍ରକର ଘର୍ଘର ଶବ୍ଦ, ରେଡ଼ିଓରେ ବିକଟାଳ ରଡ଼ି, ଲତାଙ୍କର ମନମୋହିନୀ ସ୍ୱର, ଦୂର କାରଖାନା ଚିମିନିର ଘଣ୍ଟିଫଟା ଚିତ୍କାର ସବୁ ମିଶି ଦୁନିଆର କୋଳାହଳ-ସଭ୍ୟତାର ଶବ୍ଦାୟମାନ ପ୍ରକୋପ । ପ୍ରତ୍ୟେକ ସ୍ୱର ଅସହିଷ୍ଣୁ; କେହି କାହାକୁ ଅପେକ୍ଷା କରୁନାହିଁ । ଫଳରେ ସମସ୍ତଙ୍କ କୁହାକଥା ଅକୁହା ରହିଯାଉଛି । ସେଗୁଡ଼ିକ କେବଳ ନିରର୍ଥକ ଧ୍ୱନି ହୋଇ ଆମ ସମସ୍ତଙ୍କୁ ଅଥୟ କରୁଛି ।

ଆମ ସହରମାନଙ୍କରେ ରାସ୍ତା ଚାଲି ହେଉନି । କାରଣ ରାସ୍ତାର ଦୁଇ କଡ଼ରେ ଲୋକେ ହବାଲୋକରେ ମଳମୂତ୍ର ତ୍ୟାଗ କରୁଛନ୍ତି । କିନ୍ତୁ ସମସ୍ତେ ଜାଣନ୍ତି ଏହା ଏକ ପୋଲିସ୍ ଧର୍ତ୍ତବ୍ୟ ଅପରାଧ । ତା ପାଇଁ ଜରିମାନା ବ୍ୟବସ୍ଥା ଅଛି । କିନ୍ତୁ ଜୋର୍‌ରେ ସଙ୍ଗୀତ ଶୁଣିବା ଓ ଅନ୍ୟକୁ ଜବରଦସ୍ତି ଶୁଣେଇବାକୁ କ'ଣ କେହି ଅପରାଧ ମନେ କଲେଣି ? ପଡ଼ିଶା ଘରେ ପିଲାଏ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଛି, ରୋଗୀ ଟିକିଏ ନିଦ ପାଇଁ ବିଛଣାରେ ଏକଡ଼ ସେକଡ଼ ହେଉଛି, ଶିଶୁଟିର ନିଦ ଘୁଡ଼ୁ ଘୁଡ଼ୁ ଭାଙ୍ଗୁଛି ସେ କଥା ଅନ୍ୟ ପଡ଼ୋଶୀ ଖାତିର କରେ ନାହିଁ । ସେ ବାଣ ଫୁଟାଏ, ରେଡ଼ିଓ ବଜାଏ, ଟେପ୍ ରେକର୍ଡ଼ ଘୁରାଏ, ରାତି ଅଧଯାଏ ଖଞ୍ଜଣୀ ବାଡ଼େଇ ଜଣାଣ ଗାଏ ବା

ପାହାନ୍ତାରୁ ଉଠି କୀର୍ତ୍ତନ ଆରମ୍ଭ କରିଦିଏ । ବାସ୍ତବିକ ସଭ୍ୟ ସମାଜରେ ଏହା ଏକ ଉତ୍କଟ ଅସାମାଜିକତା । ସର୍ବସାଧାରଣ ରାସ୍ତାରେ ସମସ୍ତଙ୍କ ଅଧିକାର ଅଛି କହି ସେଠାରେ ମଳମୂତ୍ର ତ୍ୟାଗ କରିବା ଯାହା ଏକ ପ୍ରଶାନ୍ତ ବାୟୁମଣ୍ଡଳକୁ ଅବାଞ୍ଛିତ ଚିତ୍କାରରେ କମ୍ପମାନ କରିବା ତାହା ।

## ମନମୁଖୀ ଅବିଚାର

ବିଲାତ ଆମେରିକା ପରି ସଭ୍ୟ ଦେଶରେ ଗୋଲମାଲ ନିରୋଧ ପାଇଁ ଅନେକ ସଂସ୍ଥା ଗଢ଼ା ହେଲାଣି । କାରଣ ଗୋଲମାଲ ହେତୁ ଅନେକ ପ୍ରକାର ରୋଗର ପ୍ରକୋପ ବଢ଼େ । ନିଦରେ ବ୍ୟାଘାତ ଆସେ । ଶ୍ରମିକମାନଙ୍କର ଦକ୍ଷତା କମିଯିବାରୁ କାରଖାନାର ଉତ୍ପାଦନ କମିଯାଏ । ଏକାଗ୍ରତା ନଷ୍ଟ ହୁଏ । ଅନେକ ସମୟ ପର୍ଯ୍ୟନ୍ତ କାର୍ଯ୍ୟକରି ହୁଏ ନାହିଁ । ଯେଉଁ କାର୍ଯ୍ୟ ହୁଏ ସେଥିରେ ବି ନାନା ପ୍ରକାର ତ୍ରୁଟି ରହିଯାଏ । ଯେଉଁ ରାସ୍ତାରେ ଘୋ ଘୋ ଶବ୍ଦ ହେଉଥାଏ ସେଠାରେ ଗାଡ଼ିଚାଳକ ଅନ୍ୟମନସ୍କ ହୋଇ ଦୁର୍ଘଟଣା ଘଟାଏ । ଶିକ୍ଷକ ପଢ଼ାଇ ପାରେ ନାହିଁ । ଛାତ୍ର ପଢ଼ିପାରେ ନାହିଁ । ଡାକ୍ତରଙ୍କ ବିଚାରରେ ତ୍ରୁଟି ରହିଯାଏ । ସମସ୍ତେ ଅନୁଭବ କରିଥିବେ ବସ୍‌ରେ ଗଲାବେଳେ ବଡ଼ ପାଟିରେ କଥା କହିବାକୁ ପଡ଼ିଥାଏ । ଏମିତି ଅଯଥା ଚିତ୍କାର କରି କଥା କହିଲେ ଶୀଘ୍ର କ୍ଳାନ୍ତି ଆସିଥାଏ । ତେଣୁ ନିଜେ ଭାଗବତ ଶୁଣି ସାହିର ବୁଢ଼ୀ ବୁଢ଼ା, କଣା, କୁଜା, ଛୋଟା, କାଲା ସମସ୍ତଙ୍କୁ ମାଇକ୍‌ରେ ଭାଗବତ୍ ଶୁଣାଇବାକୁ ହେଲେ କର୍ତ୍ତୃପକ୍ଷଙ୍କ ଠାରୁ ଅନୁମତି ନେବାକୁ ପଡ଼େ । କିନ୍ତୁ ସାହି ପିଲାଏ ଚିତ୍ରତାରକାଙ୍କ କଥୋପକଥନ ମାଇକ୍‌ରେ ନିଜ ଗୁରୁଜନଙ୍କୁ ଶୁଣାଇବାକୁ କ'ଣ କାହାର ଅନୁମତି ଭିକ୍ଷା କରନ୍ତି ? ଏଭଳି ଆଧୁନିକ ଅବସର ବିନୋଦନ ପ୍ରକୃତରେ ଅତି ଉତ୍କଟ । ବିଦେଶରେ ଯାନ ବାହନ ଓ କଳକାରଖାନାକୁ ନୀରବ କରିବାକୁ ଉଦ୍ୟମ ହେଉଥିଲା ବେଳେ ଆମ ଦେଶରେ ମଣିଷମାନଙ୍କର ମନମୁଖୀ ଅବିଚାର ଚାଲିଛି ।

ସୁଖର କଥା; ବମ୍ବେ, କଲିକତା ପ୍ରଭୃତି ବଡ଼ବଡ଼ ସହରମାନଙ୍କରେ ଗୋଳମାଳର ମାରାତ୍ମକତା ଲୋକେ ଉପଲବ୍‌ଧି କଲେଣି । ବିଶ୍ୱ ସ୍ୱାସ୍ଥ୍ୟ ସଂଘ ସହିତ ସଂପୃକ୍ତ ଥିବା ଆଲାନ୍ ବେଲ୍ କହନ୍ତି, "ପ୍ରତ୍ୟେକ ସରକାର

ଉପଲବ୍ଧି କରୁ ଗୋଳମାଳ ଏକ ସର୍ବସାଧାରଣ ଅପରାଧ । ମାନସିକ ଓ ଶାରୀରିକ ସୁସ୍ଥତା ପାଇଁ ଏହା ଏକ ଭୟଙ୍କର ବିପଦ ।" ତାଙ୍କର ଆଶା ଗୋଳମାଳ ନିରାକରଣ ପାଇଁ ସରକାର ଦୃଢ଼ ପଦକ୍ଷେପ ନେବେ ଓ ଲୋକେ ଏଥିରେ ଆନ୍ତରିକ ସହଯୋଗ କରିବେ ।

## ବେଲ୍ ଓ ଡେସିବେଲ୍

କେଉଁ ଧ୍ୱନି କେତେ ଗୋଳମାଳ କରେ ଓ ଆମେ କେତେ ପରିମାଣର ଗୋଳମାଳ ସହିପାରିବା ଏହା ସମସ୍ତେ ଜାଣିବା ଉଚିତ । ଧ୍ୱନିର ତୀବ୍ରତା ମାପିବା ପାଇଁ ଯେଉଁ ଏକକ ବ୍ୟବହାର କରାଯାଏ ତାକୁ 'ବେଲ' କହନ୍ତି । ଟେଲିଫୋନ୍‌ର ଆବିଷ୍କର୍ତ୍ତା ଆଲେକ୍‌ଜାଣ୍ଡର ଗ୍ରାହାମ୍ ବେଲ୍‌ଙ୍କ ନାମାନୁସାରେ ଏହା ନାମିତ । ଏହାର ଦଶମାଂଶକୁ ଏକ ଡେ଼ସିବେଲ କହନ୍ତି । ସାଧାରଣ ଏକକ ପରି ଦୁଇ ଡେସିବେଲ ଧ୍ୱନିର ତୀବ୍ରତା ଏକ ଡେସିବେଲ୍ ଧ୍ୱନିର ତୀବ୍ରତାର ଦୁଇଗୁଣ ନୁହେଁ । କେତେକ ଉଦାହରଣରୁ ଡେସିବେଲ ଏକକ ସମ୍ବନ୍ଧରେ ଧାରଣା କରିହେବ ।

ଯେଉଁ ଧ୍ୱନି ଜଣେ ସାଧାରଣ ଲୋକ ତାର ସୁସ୍ଥ କାନରେ କେବଳ ବାରିପାରେ ତାହାର ପରିମାଣ ଶୂନ୍ ଡେସିବେଲ୍ । ତା ସହିତ ତୁଳନା କଲେ ବିରାଡ଼ିର ଘୁଡ଼ୁ ଘୁଡ଼ୁ ଶବ୍ଦ ୨୫ ଡେସିବେଲ ଓ ଖବର କାଗଜ ଓଲଟାଇବା ଶବ୍ଦ ୩୦ ଡେସିବେଲ । ଟାଇପ୍ ରାଇଟର ଶବ୍ଦ ୪୦ ଡେସିବେଲ । କାନରେ ଅସହ୍ୟ ଯନ୍ତ୍ରଣା ଜନ୍ମାଉଥିବା ଧ୍ୱନିର ପରିମାଣ ୧୨୦ ଡେସିବେଲ୍ । ଧ୍ୱନିର ତୀବ୍ରତା ସମ୍ବନ୍ଧରେ ଧାରଣା ଦେବାକୁ ତଳେ ଏକ ତାଲିକା ଦିଆଗଲା ।

| ଧ୍ୱନି | ଡେସିବେଲ ଏକକରେ |
|---|---|
| ଯେଉଁ ଧ୍ୱନି କେବଳ କାନରେ ବାରିହୁଏ | ୦ |
| ମଣିଷର ହୃତ୍‌ପିଣ୍ଡ ସ୍ପନ୍ଦନ | ୧୩ |
| ଫୁସ୍ ଫୁସ୍ କଥା | ୨୫ |
| ବିରାଡ଼ିର ଘୁଡ଼ୁ ଘୁଡ଼ୁ ଶବ୍ଦ | ୨୫ |
| ଖବର କାଗଜ ଓଲଟା ଶବ୍ଦ | ୩୦ |

| | |
|---|---|
| ଟାଇପ୍‌ରାଇଟର ଶବ୍ଦ | ୪୦ |
| ଗୋଟିଏ କୁକୁର ଭୁକା | ୬୬ |
| ୩।୪ ଜଣଙ୍କର କଥାବାର୍ତ୍ତା | ୬୫ ରୁ ୭୦ |
| ମଣିଷ ପାଟି ପର୍ଯ୍ୟନ୍ତ ଚିତ୍କାର କଲେ | ୮୬ |
| ମଟର ସାଇକଲ (୮ ମିଟର ଦୂରରେ) | ୯୦ |
| ସିଂହର ଗର୍ଜନ | ୯୩ |
| ଚଳନ୍ତା ରେଲଗାଡ଼ିର ଧ୍ୱନି | ୧୦୦ |
| ଜେଟ୍ ବିମାନ (୩୦ ମିଟର ଦୂରରେ) | ୧୦୫ |
| ଘଡ଼ଘଡ଼ି | ୧୨୦ |
| ଜେଟ୍ ବିମାନ ଉଠିଲାବେଳେ ଧ୍ୱନି | ୧୫୦ |
| ରକେଟ୍ ଇଞ୍ଜିନ ଶବ୍ଦ | ୧୮୦ |

## ଭୟଙ୍କର ଧ୍ୱନି

ଦେଖାଯାଇଛି ୮୦ ଡେସିବେଲରୁ ଅଧିକ ଗୋଳମାଳ ଭିତରେ କାର୍ଯ୍ୟ କରିବାକୁ ହେଲେ ଶ୍ରବଣ ଶକ୍ତି କମି ଆସେ । ୧୫୦ ଡେସିବେଲ ଧ୍ୱନି ଲୋକଙ୍କୁ ପୂରା ବଧିର କରି ଦେଇପାରେ । ପୃଥିବୀ ଶୁଣିଥିବା ଏକ ଭୟଙ୍କର ଧ୍ୱନିର ହିସାବ ଅଛି । ତାହା ହେଉଛି କ୍ରାକାଟୋ ଅଗ୍ନ୍ୟୁତ୍ପାତର ଶବ୍ଦ । ଏହା ୧୮୮୩ ଖ୍ରୀଷ୍ଟାବ୍ଦର ଘଟଣା । ଏହି ଧ୍ୱନିରେ ୩୩ କିଲୋମିଟର ବ୍ୟାପି ଅଞ୍ଚଳ ଥରହର ହୋଇଗଲା । ବୃକ୍ଷଲତା ସବୁ ଉପୁଡ଼ି ପଡ଼ିଲା । ଘରସବୁ ଭାଙ୍ଗିଗଲା । ଜାହାଜ ବୁଡ଼ିଗଲା । ଲୋକମାନେ ତ୍ରାହି ତ୍ରାହି କାଳ ହୋଇଗଲେ । ୫ ହଜାର କିଲୋମିଟର ଦୂରକୁ ଏହା ଶୁଭିଥିଲା ବୋଲି ପ୍ରବାଦ ଅଛି । ଏଥିରୁ ବୈଜ୍ଞାନିକମାନେ ହିସାବ କରନ୍ତି ଏହା ୧୯୦ ଡେସିବେଲ ହୋଇଥିବ ।

## ସଭ୍ୟତାର ଦୌରାତ୍ମ୍ୟ

ଗୋଳମାଳର ମନ୍ଦ ଫଳ ବିଷୟରେ ଆଜି ସମସ୍ତଙ୍କୁ ସତର୍କ କରେଇବାର ବେଳ ଆସିଛି । କାରଖାନା ଚାଲୁଥିବା ବେଳେ, ଯାନବାହନ ଗତି କଲାବେଳେ ବା ଯନ୍ତ୍ରପାତି ଚଳାଇଲାବେଳେ କିପରି ଗୋଳମାଳ କମ୍ ହେବ ବୈଜ୍ଞାନିକ ତାହାର ଉପାୟ ସ୍ଥିର କଲେଣି । ଘର୍ଷଣ କମାଇଲେ ଓ

ସ୍ନେହନ ପାଇଁ ଉପଯୁକ୍ତ ତେଲ ବ୍ୟବହାର କଲେ ଯନ୍ତ୍ରପାତିର କୈଁକଟର ବା ଘର୍ଘର ଅନେକ ପରିମାଣରେ କମିଯିବ । କେତେକ ଭଚ୍ଚୁଳନ୍ତ ଟ୍ରକ୍ ଓ ମଟର ଗାଡ଼ିରେ ଏଭଳି ଇଞ୍ଜିନ ଖଞ୍ଜିବାକୁ ହେବ ଯେ ସେଥିରୁ ବାହାରୁଥିବା ଶବ୍ଦ ଶ୍ରୁତିକଟୁ ନ ହୋଇ ଶ୍ରୁତିମଧୁର ଗୁଞ୍ଜନରେ ପରିଣତ ହେବ । ତାହାହେଲେ ରାସ୍ତାରେ ଟ୍ରକ୍ ଗଲାବେଳେ ଲୋକେ କାନରେ ହାତ ନ ଦେଇ ଘରୁ ରାସ୍ତାକୁ ଧାଇଁବେ । ଯାହାହେଉ ଯନ୍ତ୍ରପାତିକୁ ନୀରବ ରହିବା ପାଇଁ ବା ଗୀତ ବୋଲେଇବା ପାଇଁ ବିଜ୍ଞାନ ସିନା କିଛି କରିବ କିନ୍ତୁ; ପଡ଼ଶାଙ୍କଦ୍ୱାରା ଉପୁଜିଥିବା ଅବାଞ୍ଛିତ ଧ୍ୱନି କମାଇବା ପାଇଁ ବିଜ୍ଞାନ କ'ଣ କରିପାରେ ? ଏଥିରେ ମଣିଷ ହେଉଛି ଅପରାଧୀ । ବିଜ୍ଞାନର ଅପରାଧକୁ ମଣିଷ ଦୂର କରିପାରେ । କିନ୍ତୁ ମଣିଷର ଅପରାଧକୁ ବିଜ୍ଞାନ ନିୟନ୍ତ୍ରଣ କରିବ କିପରି ? ଏଥିପାଇଁ ଏକ ସାମାଜିକ ପରିବେଶ ସୃଷ୍ଟି କରିବାକୁ ହେବ ।

ଗାଁ ପଢ଼ିଆର ସେଇ ବୁଢ଼ା ବେଙ୍ଗ କଥା ଆଜି ମନେ ପଡ଼େ ।

ତାଙ୍କର ଖେଳ ଆମକୁ କାଳ
କବାଟ ଝରକା ବନ୍ଦ କର;
ଆପଣା ସୁନା ହେଲି ଭେଣ୍ଡି
କାନରେ ଦିଅ ତୁଳା ଖଣ୍ଡି ।

ବଣ ଜଙ୍ଗଲର ବୁଲି ମଣିଷ ବସ୍ତି ବସେଇଥିଲା କେବଳ କାଣିଚାଏ ସହଯୋଗ ଓ ସହାନୁଭୂତି ପାଇଁ । ଏତକ ନ ପାଇ ଏବେ କଅଣ ପୁଣି ତାକୁ ବଣକୁ ଫେରିବାକୁ ହେବ । ସେଭଳି ବଣ ବା କାହିଁ ? ଚାରିଆଡ଼େ ସଭ୍ୟତାର କୋଳାହଳ । ପଳାୟନ ପାଇଁ ଉପାୟ ନାହିଁ । ପଳାୟନ ପନ୍ଥା ମଧ୍ୟ ଏକ ହୀନ ପନ୍ଥା । ଏକମାତ୍ର ବୈଜ୍ଞାନିକ ପ୍ରତିକାର ହେଲା—କବାଟ ଝରକା ବନ୍ଦକରି, ଚାରିକଡ଼େ ଧ୍ୱନିନିରୋଧୀ କାନ୍ଥ ଉଠାଇ କାନ ପାଇଁ ତୁଳାର ଏକ ମୁଲାୟମ ଓ ଶବ୍ଦଶୋଷୀ ଜାଲକ ବ୍ୟବସ୍ଥା କରି ସଭ୍ୟତାର ଦୌରାତ୍ମ୍ୟକୁ ସହିନେବା ।

# ଝିଅ ଜନମ ପର ଘରକୁ

## ପୁତ୍ ନରକର ବିଭୀଷିକା

ଝିଅଟିଏ ଜନମ ହେଲେ ମାଆ ବାପାଙ୍କ ମନ ଫିକା ପଡ଼ିଯାଏ । କାରଣ ଯେତେ ଯାହା ହେଲେ ବି ଶେଷରେ ସେ ପର ଘରକୁ ଯିବ, ଯେଉଁଠି ଜନ୍ମ ହୋଇଛି ସେଠି ସେ ରହି ପାରିବନି । ବୁଢ଼ା ବୁଢ଼ୀମାନେ କହନ୍ତି—ଝିଅ ଘିଅ; ରହିଗଲେ ରହଣିଆ ଗନ୍ଧାଏ । ଆମ ପାଖପଡ଼ିଶା ପଣ୍ଡିତେ ଭାଗ୍ୟବାନ; ତାଙ୍କର ପାଞ୍ଚ ପୁଅ; ଝିଅ ଜମା ନାହିଁ । ତାଙ୍କ ଭାଗ୍ୟକୁ ସେମାନଙ୍କ ମଧ୍ୟରୁ ଜଣେ ବି କେହି ମାର୍କଡ଼ି ମାରୁ ନାହାନ୍ତି; କିନ୍ତୁ ଶିଖାଶିଖି ହେଲାପରେ ପରୀକ୍ଷାରେ ସମସ୍ତେ ମାର୍କଡ଼ିଚଢ଼ ମାରୁଛନ୍ତି । ତଥାପି ପଣ୍ଡିତେ ପୁଅମାନଙ୍କ ପାଇଁ ଛାତି ଫୁଲେଇ ବାଟ ଚାଲନ୍ତି । ଆର ପଟେ ଥିବା ଡାକ୍ତର ବାବୁଙ୍କ ଝିଅ ଆଇ. ଏସ୍. ସି. ପରୀକ୍ଷାରେ ବିଶ୍ୱବିଦ୍ୟାଳୟରେ ପ୍ରଥମ ହେଲା । ଆଇ. ଏ. ପରୀକ୍ଷାରେ ପ୍ରଥମ ଦଶ ଜଣଙ୍କ ମଧ୍ୟରୁ ଛଅ ଜଣ ହେଲେ ଝିଅ । ପଣ୍ଡିତେ ଏହା ଶୁଣି ଠୋ ଠୋ ହସି ଉଠିଲେ । କହିଲେ—"ଯାଆ, ଯାଆ ଝିଅଙ୍କ ବାହାଦୁରି ଆଉ ଗପନା, ଷଡ଼ଙ୍ଗୀର ସାତଟା ଝିଅ, ବିଚରାଟି ଯେତେବେଳେ ପୁତ୍ ନରକରେ ଘାଣ୍ଟି ହେବ, ସେଗୁଡ଼ାଙ୍କ ମଧ୍ୟରୁ କେହି ଜଣେ ଭଲି ଯାହା ହେବ ?" ତା'ପରେ ଟିପେ ନାସ ଏକା ସୁଡ଼ୁକାରେ ଟାଣିନେଇ ଗାଇଲେ "ବିନା ଆଶ୍ରେ ନ ବର୍ତ୍ତନ୍ତେ କବିତା ବନିତା ଲତା । ଆରେ ଯେତେ ଯାହା କଲେ ବା ହେଲେ ଝିଅ ପାଇଁ ଆଶାଟିଏ ଦରକାର । ସେ ରହି ପାରିବନି, ଘର ଛାଡ଼ି ଯିବ, ଶେଷରେ ପର ଚୁଲି ଫୁଙ୍କିବ । ଶ୍ଲୋକ ଆହୁରି ପୁଣି କହୁଛି—ପିତା ରକ୍ଷତି କୌମାରେ; ଭର୍ତ୍ତା ରକ୍ଷତି ଯୌବନେ; ପୁତ୍ରସ୍ତୁ ସ୍ଥାବରେ ରକ୍ଷନ୍ତି; ନ ସ୍ତ୍ରୀ ସ୍ୱାତନ୍ତ୍ର୍ୟ ମର୍ହତି । ସ୍ତ୍ରୀର ସ୍ୱାଧୀନତା କାହିଁ ? ସବୁ ବୟସରେ ସେ କାହାକୁ ହେଲେ ଆଶ୍ରା କରୁଛି । ମହାପାପ ମାଆଙ୍କ

ଠାରୁ ଠୁଣୁକା ନଖାଇଥିଲେ, ମୋ ବରାଦ ଅନୁସାରେ ଚଣ୍ଡୀପାଠ କରାଇ ନଥିଲେ ବିଚରା ଷଡ଼ଙ୍ଗୀର ସାତ ଝିଅ ପରେ କ'ଣ ପୁଅ ହୋଇଥାନ୍ତା ? ଜାଣ, ପୁତ୍ର ନରକର ବିଭୀଷିକା ତାକୁ ଶୁଆଇ ବସାଇ ଦେଉ ନଥିଲା । ପଚିଶ ବର୍ଷରେ ସାତ ଝିଅ ପରେ ପୁଅଟିଏ ପାଇ ଦି ପ୍ରାଣୀ ଏବେ ଟିକିଏ ଥୟ ହେଲେ ।"

## ଦିନରେ ମୋହିନୀ

ପାଖରେ ଠିଆ ହୋଇଥିବା ପାଠୁଆ ଯୁବକ ଜଣକ ଆଉ ଧୈର୍ଯ୍ୟ ଧରି ପାରିଲେ ନାହିଁ । ଗର୍ଜି ଉଠି କହିଲେ—"ରଖହୋ ପଣ୍ଡିତେ ତମ ପୁରୁଣା-କାଳିଆ କଥା । ଆଗ କଥା ବାଘ ଖାଇଲାଣି । ଷଡ଼ଙ୍ଗୀକୁ ପୁତ୍ର ନରକ ଅଥୟ କରୁ ନଥିଲା ସେ ତମେ ଓ ତମ ସାଥୀମାନେ ଅଥୟ କରୁଥିଲେ । ମୁଁ ଝାନ୍‌ସି ରାଣୀ ଲକ୍ଷ୍ମୀବାଈଙ୍କ ସାହସ ବା ଲୀଳାବତୀଙ୍କ ପାଣ୍ଡିତ୍ୟ କଥା କହୁନି । ଆମ ଅପ୍ରତିଦ୍ୱନ୍ଦ୍ୱୀ ନେତ୍ରୀ ଇନ୍ଦିରା ଗାନ୍ଧୀ କାହାକୁ ଖାତିର କରିଥିଲେ ? ଗଣତନ୍ତ୍ରର ଜନ୍ମଦାତ୍ରୀ ଗ୍ରେଟ୍‌ବ୍ରିଟେନର ରକ୍ଷାକର୍ତ୍ତ୍ରୀ ହେଲେ ମାର୍ଗାରେଟ୍ ଥାଚେର୍ । ମହାକାଶଚାରିଣୀ ତେରେସ୍କୋଭାଙ୍କ କଥା ଚିନ୍ତା କରିଛ କି ? କେବଳ ସେହି ପଣ୍ଡିତିଆ ପାଠରେ ଅଛି ନାରୀ କପଟର ପ୍ରତିମୂର୍ତ୍ତି, ମାୟାର ପେଡ଼ି, ସଂସାର କାରାଗାରର ଶୃଙ୍ଖଳ, ମୋକ୍ଷ ମାର୍ଗର ମୁଖ୍ୟ ପ୍ରତିବନ୍ଧକ । ଏ ଯୁଗର ନାରୀ ନିର୍ଯ୍ୟାତନା ପାଇଁ କେବଳ କେତେକ ଚୁଟିରଖା ପଣ୍ଡିତେ ଓ ତାଙ୍କ ଶ୍ଳୋକ ଦାୟୀ ।

ଯୁବକଙ୍କର ଏଭଳି ଅତର୍କିତ ଆକ୍ରମଣରେ ପଣ୍ଡିତେ ଟିକିଏ ଶଙ୍କି ଯାଇ ନରମ ଗଳାରେ ଆରମ୍ଭ କଲେ "ଆରେ ବାବୁ, ଏତେ ତାତି ଉଠୁଛ କାହିଁକି ? ଏକଥା କ'ଣ ମୁଁ କହୁଛି ? ମହାପୁରୁଷ ତୁଳସୀ ଦାସ ନିଜେ କହିଛନ୍ତି—ଦିନ୍‌ମେ ମୋହିନୀ ରାତ୍‌ମେ ବାଘିନୀ ପଲକ ପଲକ ଲହୁ ଚୁଷେ । କାହା ପାଇଁ ମହାଭାରତ ଓ ରାମାୟଣ ରଚିତ ହେଲା ? ଏ ଯୁଗର ନାରୀ କ'ଣ ସୀତା ଦ୍ରୌପଦୀଙ୍କଠାରୁ ଭିନ୍ନ ହେବେ ? ପାକିସ୍ଥାନ ନେତା ଜିଆ କ'ଣ କହିଲେ—ଦୁ'ଜଣ ସ୍ତ୍ରୀ ସାକ୍ଷୀର ସାକ୍ଷ୍ୟ ଜଣେ ପୁରୁଷ ସାକ୍ଷୀର ସାକ୍ଷ୍ୟ ସଙ୍ଗେ ସମାନ । ଏବେ ବି ବ୍ରିଟେନର କେତେକ କଲେଜରେ ଛାତ୍ରୀମାନେ ନାମ ଲେଖାଇବାକୁ ଯୋଗ୍ୟ ନୁହଁନ୍ତି । ଏ ଦେଶ ସବୁ ନିର୍ବୁଦ୍ଧିଆ ? କେବଳ

ତମର ବୁଦ୍ଧି ଅଛି । ଦେବାମି ଅଗମଳଆ (ସ୍ତ୍ରୀ) ମାନଙ୍କୁ ଆଗ ଧାଡ଼ିରେ ବସାଇଲେ ଏ ଦେଶର ସତ୍ୟ ପୁରୁଷ ଉଦ୍ଧାର ପାଇଯିବେ ।"

## ଶସ୍ତା ସଙ୍ଗୀତ

ଏମିତି ଯୁଗ ଯୁଗ ଧରି ଏଭଳି ଯୁକ୍ତି ତର୍କ ଓ ବାଦାବାଦ ଚାଲୁ ରହିଛି । କେବଳ ଭାରତରେ ନୁହେଁ, ବିଲାତ, ଆମେରିକା, ରୁଷିଆ ସବୁ ଦେଶରେ ନାରୀର ସ୍ୱତନ୍ତ୍ର ସ୍ଥାନ । ସ୍ୱତନ୍ତ୍ର ସର୍ତ୍ତ ଦୁର୍ବଳତାର ସନ୍ଧିକ । ନାରୀକୁ କେନ୍ଦ୍ର କରି ନାଟକ, ଉପନ୍ୟାସ ଓ କାବ୍ୟ କବିତା ରଚନା, ଏପରିକି ସ୍ୱତନ୍ତ୍ର ବୈଜ୍ଞାନିକ ଗବେଷଣା ଓ ମହାକାଶ ଯାତ୍ରା ଆମେ ଯାହା କହୁନା କାହିଁକି ଅନୁନ୍ନତ ଓ ଅନଗ୍ରସର ରାଷ୍ଟ୍ରମାନଙ୍କରେ ନାରୀ କେବଳ ବିଳାସ ବ୍ୟସନର ସାମଗ୍ରୀ ଓ ନିର୍ଯ୍ୟାତନାର ଶିକାର । ଶିକ୍ଷାବିତ୍ମାନେ କହନ୍ତି ଜଣେ ପୁରୁଷ ଶିକ୍ଷିତ ହେଲେ ଜଣଙ୍କର ମୂର୍ଖତା ଦୂର ହୁଏ; କିନ୍ତୁ ଜଣେ ନାରୀ ଶିକ୍ଷିତା ହେଲେ ଗୋଟିଏ ବଂଶ ମୂର୍ଖତାରୁ ଉଦ୍ଧାର ପାଏ । କେତେକ ବ୍ୟତିକ୍ରମକୁ ବାଦ୍ ଦେଲେ ଜଣେ ଶିକ୍ଷିତା ମାଆର ପ୍ରଭାବ ସନ୍ତାନ ସନ୍ତତି-ମାନଙ୍କର ଅବଚେତନ ମନରେ ସ୍ଥାୟୀ ଭାବେ ମୁଦ୍ରିତ ହୋଇ ରହେ । ପିତା କ୍ୱଚିତ୍ ସନ୍ତାନମାନଙ୍କର ଘନିଷ୍ଠ ସମ୍ପର୍କରେ ଆସେ । କିନ୍ତୁ ଦୁଃଖର କଥା ଆମର କେତୋଟି ଶସ୍ତା ସଙ୍ଗୀତ ଓ ରକ୍ଷଣଶୀଳ ଶ୍ଳୋକ ଜରିଆରେ "ଝିଅ ଜନମ ପର ଘରକୁ" କହି ଆମେ ଝିଅମାନଙ୍କୁ ଲାଳନପାଳନ ଓ ଶିକ୍ଷା ଦୀକ୍ଷାରେ ବରାବର ହତାଦର କରି ଏ ଦେଶର ଜନନୀ, ଜାୟା ଭଗିନୀମାନଙ୍କ ପ୍ରତି ଅନ୍ୟାୟ କରି ଆସିଛୁ ।

## ପ୍ରକୃତିର ସମ ବଣ୍ଟନ

ଝିଅ ପୁଅ କଦରେ ଜନ୍ମ ହୁଅନ୍ତି ବିଚାର କରିଯାଉ । 'ଝିଅ ହେବ କି ପୁଅ ହେବ' ବୋଲି ଯେତେବେଳେ ବାପ ମା ଭାବ ହେଉଥାନ୍ତି, ଉଦ୍‌ବିଗ୍ନତା, ଆଶା ଓ ନୈରାଶ୍ୟ ମଧ୍ୟରେ ଦିନ କାଟୁଥାନ୍ତି, ରାତିରେ ନାନା ପ୍ରକାର ସ୍ୱପ୍ନ ଦେଖି ଚେଇଁ ଉଠୁଥାନ୍ତି, ଯୋଗୀଭିକାରୀ ସାଧୁସନ୍ୟାସୀଙ୍କୁ ଦାନ ଦକ୍ଷିଣା ଦେଇ ପୁଅଟିଏ କାମନା କରୁଥାନ୍ତି ମାଆର ଗର୍ଭସ୍ଥ ଭ୍ରୁଣ କିଷ୍ଟିନ୍ତରେ ବିକଶିତ ହେଉଥାଏ । ସୃଷ୍ଟି ହେବାର ଆଠରୁ ଦଶ ସପ୍ତାହ ଯାଏ ସେ

ଉଭୟଲିଙ୍ଗୀ ହୋଇ ରହିଥାଏ । କ୍ରମେ ପୁଅ କମ୍ବା ଝିଅର ଲକ୍ଷଣ ଅଧିକ ବିକଶିତ ହେବାକୁ ଲାଗେ । ଅବଶ୍ୟ ଯେଉଁଦିନୁ ଜରାୟୁରେ ଡିମ୍ବାଣୁ ଓ ଶୁକ୍ରାଣୁର ମିଳନ ହୋଇ ନିଷେକ ହୋଇଥାଏ ସେଇଦିନୁ ଯୁଗ୍ମଜ (ଡିମ୍ବାଣୁ ଶୁକ୍ରାଣୁର ମିଳନରେ ଗଠିତ) ପୁତ୍ର ବା କନ୍ୟା ହେବାର ଏକ ନିର୍ଦ୍ଦେଶ ବହନ କରିଥାଏ ।

ପୁରୁଷର ଶୁକ୍ରରେ ଦୁଇ ପ୍ରକାର ଶୁକ୍ରାଣୁ ଥାଏ । ଗୋଟିକରେ ୨୩ଟି 'କ' କ୍ରୋମୋଜୋମ ଥାଏ ଏବଂ ଅନ୍ୟଟିରେ ୨୨ଟି 'କ' କ୍ରୋମୋଜୋମ ଓ ଗୋଟିଏ 'ଖ' କ୍ରୋମୋଜୋମ ଥାଏ । କିନ୍ତୁ ସ୍ତ୍ରୀର ପ୍ରତ୍ୟେକ ଡିମ୍ବାଣୁରେ କେବଳ ୨୩ଟି 'କ' କ୍ରୋମୋଜୋମ ଥାଏ । ନିଷେଚନ ସମୟରେ କେବଳ 'କ' କ୍ରୋମୋଜନ ବହନ କରୁଥିବା ଶୁକ୍ରାଣୁ ଡିମ୍ବାଣୁ ସହିତ ମିଳିତ ହେଲେ ଝିଅ ହୁଏ । ଯଦି 'ଖ' କ୍ରୋମୋଜମ୍ ବହନ କରୁଥିବା ଶୁକ୍ରାଣୁ ମିଳିତ ହୁଏ ତାହାହେଲେ ପୁଅ ହୁଏ । ପୁରୁଷର ଶୁକ୍ରରେ ସମାନ ସଂଖ୍ୟକ 'କ' ଓ 'ଖ' ଜାତୀୟ ଶୁକ୍ରାଣୁ ଥିବାରୁ ପୁଅ ଓ ଝିଅ ସମାନ ସଂଖ୍ୟାରେ ହେବାର ସମ୍ଭାବନା । କିନ୍ତୁ ପ୍ରତ୍ୟେକଙ୍କ ଭାଗ୍ୟରେ ପ୍ରକୃତିର ସମ ବଣ୍ଟନ ସୁଯୋଗ ଜୁଟି ନପାରେ । ଷଡ଼ଙ୍ଗୀ ବାବୁଙ୍କର ସାତଟି କନ୍ୟା ରତ୍ନ ତ ସାମନ୍ତରା ବାବୁଙ୍କ କୁଳ ଉଜ୍ଜ୍ୱଳ କରିବାକୁ ସାତଟି ଧନୁର୍ଦ୍ଧର ପୁତ୍ର । ହରିୟାନାରେ ଝିଅ କମିଗଲେ ଆସାମରେ ବଢ଼ିଯାଏ । ରୁଷିଆ, ଆମେରିକା, ଇରାକ, ଇରାନ, ଭାରତ, ପାକିସ୍ଥାନ ପ୍ରଭୃତି ସବୁ ଦେଶର ନରନାରୀ ଗଣତି କଲେ ଲିଙ୍ଗ ଭେଦରେ ସେମାନଙ୍କ ସଂଖ୍ୟା ପ୍ରାୟ ସମାନ ।

## ପ୍ରଳୟର ସୂଚନା

କିନ୍ତୁ ଜଣ ଜଣଙ୍କର କେବଳ ପୁଅ ବା ଝିଅ ହୁଏ କାହିଁକି ? କୌଣସି ଅଞ୍ଚଳର ସ୍ତ୍ରୀ ବା ପୁରୁଷଙ୍କ ସଂଖ୍ୟା ଅଧିକ କାହିଁକି ? ଏହା ଗବେଷଣା ସାପେକ୍ଷ । ସାଧାରଣତଃ ଦେଖାଯାଏ ନିଷେଚନରେ ୧୦୬ ପୁଅ ହେଲେ ୧୦୦ ଝିଅ ହେବେ । ଏହାର କାରଣ ହେଲା ପୁଅ ଜନ୍ମାଇ ପାରୁଥିବା 'ଖ' ଶୁକ୍ରାଣୁ 'କ' ଅପେକ୍ଷା ଅଧିକ ହାଲୁକା ଓ ଗତିଶୀଳ । ତେଣୁ ତାହାର ନିଷେଚନ କରିବାର ସମ୍ଭାବନା ଅଧିକ । କିନ୍ତୁ ଏହି ସମ୍ଭାବନା ପୂର୍ଣ୍ଣ

କାର୍ଯ୍ୟକାରୀ ଓ ଫଳପ୍ରଦ ହୋଇପାରେ ନାହିଁ । ମାଆ ଗର୍ଭରେ ପୁଅ ଭ୍ରୂଣ ଅଧିକ ଦୁଃଖ କଷ୍ଟ ସହିପାରେ ନାହିଁ । ଗର୍ଭବତୀ ମାଆ ମୁହଁ ଶୁଖାଇଲେ, ସୁଷମ ଓ ସୁସ୍ୱାଦୁ ଖାଦ୍ୟ ଖାଇବାକୁ ନପାଇଲେ, ଶାଶୁ ନଣନ୍ଦଙ୍କ ଗଞ୍ଜଣାରେ ଅତିଷ୍ଠ ହେଲେ ତାହାର ଅକାଳ ଗର୍ଭପାତ ହୋଇଥାଏ । ଉନ୍ନତ ବିକାଶ-ଶୀଳ ଦେଶମାନଙ୍କରେ ପୁରୁଷ ସଂଖ୍ୟା ଅଧିକ ହେବାର ସମ୍ଭାବନା । ଝିଅ ଭ୍ରୂଣଟି ଅଧିକ ଦୁଃଖ କଷ୍ଟ ସହି ପାରୁଥିବାରୁ ନଷ୍ଟ ହେବାର ଆଶଙ୍କା ନଥାଏ । ତେଣୁ ପୁଅ ଓ ଝିଅ ସଂଖ୍ୟା ପ୍ରକୃତରେ ପ୍ରାୟ ସମାନ ହୋଇଥାଏ ।

କିନ୍ତୁ ପ୍ରକୃତିର ଏ ନିରପେକ୍ଷତା ବା ଉଦାରତାରେ ମଣିଷ ସନ୍ତୁଷ୍ଟ ନୁହେଁ । ସେ ସନ୍ତୁଷ୍ଟ ହେବାକୁ ମଧ୍ୟ ଶିଖୁ ନାହିଁ । ଫଳରେ ପ୍ରତି ମୁହୂର୍ତ୍ତରେ ସେ ପ୍ରକୃତି ଉପରେ ହସ୍ତକ୍ଷେପ କରି ଲାଗିଛି । ଏଥିରେ ତାହାର ସ୍ଥିତି ଆସି ସଙ୍କଟାପନ୍ନ ହେଲାଣି, ତଥାପି ନଷ୍ଟସ୍ୟ କାନ୍ୟା ଗତି । ଝିଅକୁ ପୁଅ ବା ପୁଅକୁ ଝିଅ କରିବାକୁ ବିଜ୍ଞାନ ଆଜି ଯେଉଁ ଉଦ୍ୟମ ଚଳାଇଛି ସେଥିରୁ ଏକ ନିଶ୍ଚିତ ପ୍ରଳୟର ସୂଚନା ମିଳେ ।

## ଗୃହିଣୀ ଗୃହରାଣୀ

ଜଗତସିଂହପୁରର ବିନୋଦ କଟକ ବଡ଼ ଡାକ୍ତରଖାନାରେ ବିନୋଦିନୀ ପାଲଟିଗଲା । ଏପରି ଲିଙ୍ଗ ବଦଳରେ ଡାକ୍ତରଙ୍କର ହାତ ଥିଲା । ଯୁବକ ପୁଅଠାରେ ଯୁବତୀ ଲକ୍ଷଣର ସୂଚନା ପାଇ ବାପମା ଡାକ୍ତରଙ୍କୁ ପରାମର୍ଶ କଲେ । ଫଳରେ ଉପଯୁକ୍ତ ଔଷଧ ସେବନ, ହରମୋନ ଚିକିତ୍ସା ଓ ସାମାନ୍ୟ ଅସ୍ତ୍ର ଚିକିତ୍ସା ବଳରେ ବାପାମା ପୁଅ ବଦଳରେ ଝିଅଟିଏ ପାଇଲେ । ପୁତ୍ ନରକରୁ ଯେ ଉଦ୍ଧାର କରିବାକୁ ଜନ୍ମ ହୋଇଥିଲା ପରସ୍ପରେ ତା ସଂସାର କିପରି ଚଳାଇଛି । ବିଜ୍ଞାନ ଆଉ ଖବର ରଖି ନାହିଁ ।

ଏବେ ଇସଲାମାବାଦ ଖବର ଶୁଣନ୍ତୁ । ୧୬ ବର୍ଷର ଝିଅଟି ସ୍କୁଲରେ ୧୦ମ ଶ୍ରେଣୀରେ ପଢ଼ୁଥିଲା । ଏକାଦଶ ଶ୍ରେଣୀରେ ତାକୁ ପଢ଼ିବାକୁ ଅନୁମତି ଦିଆଗଲା ନାହିଁ । କାରଣ ସେ ଆଉ ସାହନାଜ ସିଦ୍ଦିକ୍ ହୋଇ ନଥିଲା । ଡାକ୍ତରଖାନାରେ ଅସ୍ତ୍ରଚିକିତ୍ସା ବଳରେ ୧୬ ବର୍ଷର ଯୁବତୀ ଝିଅ ପୁଅ ହୋଇ

ଯାଉଥିଲା । ତେଣୁ ତାକୁ ଲୋକେ ସାଜାଦ ହାଇଦର ସିଦ୍ଦିକ୍ ବୋଲି ଡାକୁଥିଲେ । ପାକିସ୍ଥାନର ଅଧିକାଂଶ ସ୍କୁଲରେ ପଞ୍ଚମ ଶ୍ରେଣୀ ପରେ ପୁଅ ଝିଅ ଏକାଠି ପାଠ ପଢ଼ନ୍ତି ନାହିଁ । ତେଣୁ ସାଜାଦ ହାଇଦର ଓରଫ୍ ସାହାନାଜ ବାଧ୍ୟ ହୋଇ ଝିଅ ସ୍କୁଲର୍ ନାଁ କାଟି ପୁଅ ସ୍କୁଲରେ ନାଁ ଲେଖାଇଲା ।

ସୁଇଜରଲାଣ୍ଡର ଜଣେ ଯୁବକ କନ୍‌ଷ୍ଟେବଲ ରାସ୍ତାରେ ପହରା ଦେଲାବେଳେ ବଡ଼ ହାଇରାଣ ହେଲେ । ଲୋକେ ବେପରୱା ହୋଇ ଗାଡ଼ି ଚଳେଇବେ ଅଥଚ ସେ ଘଣ୍ଟା ଘଣ୍ଟା ଧରି ହଲଚଲ ନହୋଇ ତାଙ୍କୁ ସତର୍କ କରିବ । ପାଗ ଖରାପ ହୋଇଗଲେ ତାକୁ ଅଧିକ ସତର୍କ ହୋଇ କର୍ତ୍ତବ୍ୟ ବୁଲାଇବାକୁ ହୁଏ । ତେଣୁ ସେ ଗହଳ ରାସ୍ତାରେ ଠିଆ ହୋଇ ତା ବୟସର ସ୍ତ୍ରୀ ଲୋକଙ୍କ କଥା ଭାବେ । ଘରେ କେଡ଼େ ଆରାମରେ ସେମାନେ ନାହାନ୍ତି । ପଇସାକୁ କେବଳ ଏପଟ ସେପଟ କରି ଘର ଚଳେଇବା ତାଙ୍କ କାମ, ନିଅଣ୍ଟ ହେଲେ ବି ମୁଣ୍ଡ ଖେଳାନ୍ତି ନାହିଁ, ଚିକିଣିଖି ହିସାବ ଲେଖି ଗୃହସ୍ୱାମୀଙ୍କ ଦୃଷ୍ଟି ଆକର୍ଷଣ କରନ୍ତି । ବରଂ ଗୃହସ୍ୱାମୀ ନିଜ ପୌରୁଷର ଅବମାନନା ନକରି ବାରି ଫନ୍ଦି ଫିକର କରି ଦି ପଇସା ଅଧିକ ରୋଜଗାର କରନ୍ତି । ପରିବାରର ଅଭାବ, ଅସୁବିଧା ଓ ଆର୍ଥିକ ଜଞ୍ଜାଳର ସମସ୍ତ ବୋଝ ଗୃହସ୍ୱାମୀ ବହନ କରେ । ତେଣୁ ସେଇ କନେଷ୍ଟବଳଟି ସ୍ୱାମୀ ହୋଇ ଆସୁର ଦାୟିତ୍ୱ ନେବା ଅପେକ୍ଷା ଜଣେ ଗୃହିଣୀ ହୋଇ ବ୍ୟସ୍ତ କରିବାର ସୁଯୋଗ ଖୋଜି ବସିଲା । ଏଥିପାଇଁ ସେ ଡାକ୍ତରଙ୍କ ପରାମର୍ଶ ନେଲା । ଶେଷରେ ପୌରୁଷ ପରିତ୍ୟାଗ କରି ପରଘରକୁ ଯିବାକୁ ପସନ୍ଦ କଲା ।

## ମନଇଚ୍ଛା ପୁଅ ଝିଅ

ବର୍ତ୍ତମାନ ପ୍ରଶ୍ନ ହେଉଛି ମନ ଇଚ୍ଛା ପୁଅ ଝିଅ କରି ହେବ କି ? ଅବଶ୍ୟ ପ୍ରକୃତିର ନିୟମାନୁସାରେ ଜୀବର ପ୍ରତ୍ୟେକ ଶ୍ରେଣୀରେ ପୁଅ ଅଧାକୁ ଝିଅ ଅଧା ହେବେ । କିନ୍ତୁ ଆମ ବୈଜ୍ଞାନିକ ବିଦ୍ୟା ଆମକୁ ବ୍ୟବସାୟୀ କରି ପକାଇଛି । ପ୍ରତି କ୍ଷେତ୍ରରେ ଆମେ ଲାଭକ୍ଷତି ତଉଲ କରୁଛୁ । ଜର୍ସି ଗାଈଠାରୁ ଅଧିକା କ୍ଷୀର ମିଳିଲେ ଆମର ଗୁଡ଼ିଏ ମାଈ ଜର୍ସି ବାଛୁରୀ

ଦରକାର । ହରିୟାନା ଗାଈର ଅଣ୍ଡିରା ବାଛୁରୀ ଭଲ ବଳଦ ହୋଇ-ପାରିବ । ତେଣୁ ସେ କ୍ଷେତ୍ରରେ ଆମ ପାଇଁ ଅଣ୍ଡିରା ବାଛୁରୀ ଉପକାରୀ । ଏଥିପାଇଁ ମହାପାତ୍ରମାନଙ୍କଠାରୁ ମନ୍ତ୍ରପୂତ ପାଣି ନଆଣି ବିଜ୍ଞାନ ପ୍ରଣାଳୀ ଅବଲମ୍ବନ କରିବା କ'ଣ ଠିକ୍ତା ନୁହେଁ ?

ଦଳେ ଜାପାନୀ ବୈଜ୍ଞାନିକ ଏଥିପାଇଁ ଏକ ବୈଦ୍ୟୁତିକ ପ୍ରଣାଳୀ ବାହାର କରିଛନ୍ତି । ସେମାନଙ୍କ ନାମ ଡକ୍ଟର ହିଡ଼ଓ ମୋରି ଓ ଡକ୍ଟର ଶିହାଚି ଲିଜୁକା । ସେମାନେ ଏକ ଦ୍ରବଣର ଶୁକ୍ରାଣୁକୁ ଜୀବନ୍ତ ରଖାଇ କେନ୍ଦ୍ରାପସାରୀ ପଦ୍ଧତିରେ ତାକୁ ଗୋଟିଏ ସୂକ୍ଷ୍ମ ପଥ ଦେଇ ଦୁଇଟି କାଚ ଫଳକ ମଧ୍ୟକୁ ନେଉଛନ୍ତି । କାଚଫଳକମାନ ଦୁଇଟି ବିଦ୍ୟୁଦଗ୍ର ନିକଟରେ ଅଲଗା ଅଲଗା ରହୁଛି । ଯୁକ୍ତ ବିଦ୍ୟୁଦଗ୍ର ନିକଟରେ 'କ' ଜାତୀୟ ଓ ବିଯୁକ୍ତ ବିଦ୍ୟୁଦଗ୍ର ନିକଟରେ 'ଖ' ଜାତୀୟ ଶୁକ୍ରାଣୁ ଜମା ହୋଇଯାଉଛି । ସାନ୍‌ଫ୍ରାନ୍‌ସିସ୍କୋର ବୈଜ୍ଞାନିକ ରୋନାଲଡ଼ ଏରିକସନ୍ ରକ୍ତର ଆଲବୁମିନ ସାହାଯ୍ୟରେ 'କ' ଜାତୀୟ ଶୁକ୍ରାଣୁ ଠାରୁ 'ଖ' ଜାତୀୟ ଶୁକ୍ରାଣୁକୁ ପୃଥକ୍ କରାଇବା ପ୍ରଣାଳୀ ବାହାର କରିଛନ୍ତି । ଆଲବୁମିନ ଧୀର ଗାମୀ 'କ' ଶୁକ୍ରାଣୁକୁ ଆଗେଇବାରେ ବାଧା ଦିଏ । 'ଖ' ଜାତୀୟ ଦ୍ରୁତଗାମୀ ହୋଇଥିବାରୁ ବାଧା ପାଏ ନାହିଁ । ଏରିକ୍‌ସନ ପଦ୍ଧତିରେ 'ଖ' ଶୁକ୍ରାଣୁକୁ ସଂଗ୍ରହ କରି କୃତ୍ରିମ ଉପାୟରେ ନିଷେଚନ କରାଇଲେ ପୁଅ ଶତକଡ଼ା ୫୦ ବଦଳରେ ୭୫କୁ ବଢ଼ିଯାନ୍ତି ।

## ପୁଅ ବଦଳରେ ଝିଅ

ପୁଅଝିଅ ଜନ୍ମକୁ ଓଲଟପାଲଟ କରିବା ଅପରାଧ । କିନ୍ତୁ ଏକ ଗୁରୁତର ଅପରାଧ ଏଡ଼ାଇବାକୁ ହେଲେ ଆମକୁ ଏକ ସାମାନ୍ୟ ଅପରାଧ କରିବାକୁ ହେବ । ମାଆଠାରୁ କେତେକ ବଂଶୀୟ ବ୍ୟାଧି ପୁତ୍ର ସନ୍ତାନଠାରେ ଦେଖା ଦିଏ । ସେଗୁଡ଼ିକ ହେଲା ହିମୋ ଫିଲିଆ ଓ ବର୍ଣ୍ଣାନ୍ଧତା । ହିମୋଫିଲିଆ ହେଲେ ସାମାନ୍ୟ କ୍ଷତରୁ ରକ୍ତ ଧାର ଛୁଟେ, ବନ୍ଦ ହୁଏ ନାହିଁ; କାରଣ ରକ୍ତ ଜମାଟ ବାନ୍ଧେ ନାହିଁ । ବର୍ଣ୍ଣାନ୍ଧତାରେ ନାଲି ବର୍ଣ୍ଣ ସବୁଜ ଦିଶେ । ଏହି ରୋଗଗୁଡ଼ିକ କେବଳ ପୁଅକୁ ହୁଏ; ଝିଅକୁ ହୁଏ

ନାହିଁ । ତେଣୁ ପୁଅମାନଙ୍କୁ ଜନ୍ମ କରେଇ ଏ ରୋଗରେ ପକେଇବା ଅପେକ୍ଷା ସେମାନେ ଯେପରି ଜନ୍ମ ନହେବେ ତା'ର ପ୍ରତିକାର କରିବା କ'ଣ ଅନ୍ୟାୟ ? ବରଂ ଝିଅ ପର ଘରକୁ ଯାଉ, ବାପାମା ପୁତ୍ ନରକରେ ଘାଣ୍ଟି ହୁଅନ୍ତୁ ଏରିଜ୍‌ସନ ପଦ୍ଧତିରେ କୃତ୍ରିମ ନିଷେଚନ ଦ୍ୱାରା ପୁଅ ବଦଳରେ ଝିଅ ଜନ୍ମେଇବା ବାଞ୍ଛନୀୟ । କେବଳ ଆମର ଦୁଇଟି ହେଲେ ଯଥେଷ୍ଟ ନୁହେଁ ଦୁଇଟି ସୁସ୍ଥ ଓ ନିରୋଗ ହେଲେ ପରିବାରରୁ ଅଶାନ୍ତି ଦୂର ହେବ । ପରିବାର କଲ୍ୟାଣ ବିଭାଗ ଏଭଳି ବ୍ୟାପକ ଯୋଜନା ହାତକୁ ନେଲେ ନବ ଦମ୍ପତି ଅଶ୍ୱସ୍ତି ହେବେ ।



# ଯୋଗାଯୋଗ—
# ଏ ଯୁଗର ଓ ଆଗାମୀ ଯୁଗର

## ସମ୍ବାଦ ବିଚିନ୍ତା

ଆଜିକାଲି ଦିନେ ଦି' ଦିନ ଖବରକାଗଜ ନ ପଢ଼ିଲେ ମନେ ହୁଏ ଆମେ ଯେପରି ଏକ ନିର୍ଜ୍ଜନ ଦ୍ୱୀପର ବାସିନ୍ଦା ହୋଇଗଲୁ । ମନରେ ସହସା ସହସ୍ର ସହସ୍ର ପ୍ରଶ୍ନ ଉଠେ । 'ଇନ୍‌ସାଟ୍‌– 'ବି'ର ସୌର ପାଲ ଖୋଲିଲା ନାହିଁ କାହିଁକି ? ଏତେ ସତର୍କତା ସତ୍ତ୍ୱେ କଅଣ ସେ ଅଜଣାବସ୍ତୁ ଆସି ଏତେ ଉଚ୍ଚରେ ତା'ଠାରେ ପିଟି ହୋଇଗଲ ? ଜିଆ ଜନମଙ୍ଗଳ ପାଇଁ କେତେ-ଜଣଙ୍କୁ ଜେଲ ପଠେଇଥିଲେ ? ପାଲେଷ୍ଟାଇନ ମୁକ୍ତି ସଂଗ୍ରାମର ଗରିଲାମାନେ ପୁଣି କେଉଁ ବିମାନ ଅପହରଣ କରିବାର ଯୋଜନା କଲେଣି ? ତେଣେ ବିଶ୍ୱଶାନ୍ତି ପାଇଁ ଯୋଜନା କ'ଣ ? ଆମେରିକା ଅନ୍ୟ କେଉଁ ରାଷ୍ଟ୍ରକୁ ଏଫ୍‌-୧୬ ଓ କ୍ଷେପଣାସ୍ତ୍ରରେ ସଜ୍ଜିତ କରିବାର କଳ୍ପନା କଲେଣି କି ?

ନିକଟ ଭବିଷ୍ୟତରେ ଜାପାନ ଜାତିକୁ ଦୋହଲାଇଲା ଭଳି କୌଣସି ଭୟାବହ ଭୂମିକମ୍ପର ଆଶଙ୍କା ଅଛି କି ? ବଙ୍ଗଳାଦେଶ ସହିତ ବଙ୍ଗୋପ-ସାଗରସ୍ଥ ଚଢ଼ର ଲୁଚକାଳି କେବେ ଶେଷ ହେବ ? କମ୍ୟୁନିଷ୍ଟ ଡାକ୍ତରମାନେ ମଲାପରେ ଆଉ କେତେଜଣଙ୍କୁ କେତେ ସମୟ ବଞ୍ଚେଇ ପାରିଲେଣି ? ଦକ୍ଷିଣ ଆଫ୍ରିକାର ଡାକ୍ତର ବର୍ଣ୍ଣାର୍ଡ଼ କୌଣସି ଗୋରା ଲୋକର ହୃଦୟ ବଦଳାଇବାକୁ ତା'ଠାରେ କଳା ଲୋକର ହୃତ୍‌ପିଣ୍ଡ ରୋପଣ କଲେ କି ? ବିଶ୍ୱ ହକି ଚାମ୍ପିଅନ ଅଷ୍ଟ୍ରେଲିଆକୁ କିଏ ପରାସ୍ତ କରିବ—ଭାରତ ନା ପାକିସ୍ଥାନ ? କପିଳଦେବ ଓ ବୋଥାମଙ୍କ ମଧ୍ୟରେ ପେଣ୍ଡୁ-ପିଟା ଲଢ଼େଇ

କେବେ ହେଉଛି ? ଆସାମରେ ବିଦେଶୀ ଚହଳ ଚାଲିଛି କି ? ଆଣବିକ ବିଦ୍ୟୁତ୍ ଉତ୍ପାଦନ ପାଇଁ କିଛି ଅଭିନବ ଯୋଜନା ଅଛି କି ? ସଂସ୍କୃତ କ'ଣ ଭାରତର ରାଷ୍ଟ୍ରଭାଷା ହୋଇପାରେ ?

## ଖବର-ନିଶା

ଅନେକ ପ୍ରକାର ଏ ପ୍ରଶ୍ନ । ଏ ସବୁର ଉତ୍ତର ପାଇବା ପାଇଁ ଆମେ ଶିକ୍ଷିତ ସହର-ବାସୀ ବ୍ୟାକୁଳ । ଏଥିପାଇଁ ଆମେ କେତେ ଯୁକ୍ତିତର୍କ କରୁ । ଆଲୋଚନା ଓ ସମାଲୋଚନାରେ ଘଣ୍ଟା ଘଣ୍ଟା ବିତେଇ ଦେଉ । ସାକ୍ଷାତକାରୀ-ମାନେ ଏସବୁ ଧନ୍ଦା ଉପରେ ଅଙ୍କାବଙ୍କା ପ୍ରଶ୍ନ ପଚାରି ଚକର ବାଣ୍ଡନ୍ତି । ତେଣୁ ଠିକ୍ ଅଫିମ ନିଶା ପରି ଆମକୁ ଖବରକାଗଜ ପଢ଼ା ନିଶା ଘାରେ । ଯେ ଯେତିକି ପୁରାତନ ବେକାର, ସେ ସେତିକି ଖବରକାଗଜ ଖେଳାଏ ଓ ପତ୍ର ପତ୍ରିକା ଘାଣ୍ଟେ । କେବଳ ବେକାର କାହିଁକି ଆମେ ସମସ୍ତେ ସାଧାରଣ ଆଲୋଚନାରେ ସ୍ତର ବା ମାନରକ୍ଷା ପାଇଁ ଖବରକାଗଜ ପଢ଼ିବାକୁ ଆଗ୍ରହ ପ୍ରକାଶ କରୁ । ତା'ଛଡ଼ା ଟେଲିଫୋନ୍, ଟେଲିପ୍ରିଣ୍ଟର, ଟେଲେକ୍ସ, ବେତାର ରେଡ଼ିଓ ଓ ଦୂରଦର୍ଶନ ମାଧ୍ୟମରେ ଆମ ଚତୁଃପାର୍ଶ୍ୱରେ ସମ୍ବାଦ ଅଜାଡ଼ି ହୋଇ ପଡ଼େ । କେବଳ ଟିକିଏ ଆଖି ମେଲେଇଲେ ବା କାନ ପାତିଲେ ଆମ ଯୋଗାଯୋଗ ଠିକଣା ରହେ । ଥରେ ଅଫିମିଆଙ୍କ ପରି ଏଥିରେ ଅଭ୍ୟସ୍ତ ହେଲେ ଆଉ ମୁକ୍ତି ନାହିଁ । ନିଶା ବଢ଼ିବ ସିନା କମିବ ନାହିଁ ।

ଏ ନିଶା ଏବେ ମଧ୍ୟ ଗାଁ ଲୋକଙ୍କୁ ଘାରିଲାଣି । ଆଗେ ଲୋକେ ସଞ୍ଜ ହେଲେ ଅଧ୍ୟାୟେ ଭାଗବତ ବୋଲି ଘୁଙ୍ଗୁଡ଼ି ମାରି ଶୋଇ ଯାଉଥିଲେ । ଏବେ ଆଉ ଭାଗବତ ବୋଲା ହେଉନି । ଭାଗବତ ଟୁଙ୍ଗୀ ଅଛି; କିନ୍ତୁ ଆଉ ସେଠି ଲୋକ ଜମୁ ନାହାନ୍ତି । ସଞ୍ଜବେଳିଆ ଭିଡ଼ ଏବେ ଚା ଦୋକାନରେ ଜମିଲାଣି । ସେଠି ବୁଢ଼ାଙ୍କ ଅପେକ୍ଷା ଟୋକାଙ୍କ ସଂଖ୍ୟା ବେଶି । ଭାଗବତ ବଦଳରେ ଟ୍ରାଞ୍ଜିଷ୍ଟରରୁ ଆଞ୍ଚଳିକ ସମ୍ବାଦ ଶୁଣୁଛନ୍ତି । କିନ୍ତୁ ଦୁଃଖର କଥା, କୃଷି ପଞ୍ଜିକା ଆସିଲା ବେଳକୁ ସେମାନେ ଷ୍ଟେସନ ବଦଳି କରି ଦେଉଛନ୍ତି । ତଥାପି ଗାଁ ଲୋକଙ୍କ ଯୋଗାଯୋଗର ଉନ୍ନତି ହୋଇଛି ବୋଲି କହିବାକୁ ହେବ ।

# ଝିଂଟିପିଟି କଥା

୪୦/୫୦ ବର୍ଷ ତଳେ ଆମ ଗାଁକୁ ଖଣ୍ଡିଏ ଖବରକାଗଜ ଆସୁଥିଲା । ସେ ଖଣ୍ଡକ ପୁଣି ସାପ୍ତାହିକ । ତାକୁ ଗାଁ ମାଷ୍ଟ୍ରେ ସାଇତି ରଖି ମଝିରେ ମଝିରେ ପଢ଼ନ୍ତି । ସେ ଖବର କାଗଜ ପଢ଼ୁଛନ୍ତି ବୋଲି ଦାଣ୍ଡରେ ଛାତି ଫୁଲେଇ ବାଟ ଚାଲନ୍ତି ! ବେଳେବେଳେ ଖବରକାଗଜରେ କପଟ ବନାନ ଭୁଲ୍ ହେଉଛି, ତାହା ସେ ଆମକୁ ଦେଖେଇ ଦେଉ ଥିଲେ । ଲୋକେ ତାଙ୍କୁ ଭାରି ଖାତିର କରୁଥିଲେ । ଗାଁରେ କିଛି ଭଲ ମନ୍ଦ ଘଟିଲେ ଆଗ ଯାଇ ତାଙ୍କୁ ପଚାରୁଥିଲେ । କାରଣ ସେତେବେଳେ ସେମାନେ ଭାବୁଥିଲେ ଯେ, ଯିଏ ଖବରକାଗଜ ପଢ଼ୁଛି, ସେ ସବୁ ଠିକ୍ ଭାବେ ଅନୁମାନ କରିପାରିବ । ପରେ ଖବର କାଗଜ ପଢ଼ାଳିଙ୍କ ସଂଖ୍ୟା ବଢ଼ିଲା । ଲୋକେ ଜାଣିବାକୁ ଚାହିଁଲେ, ଗାନ୍ଧି ଆଉ କ'ଣ କହୁଛନ୍ତି ? ଯୁଦ୍ଧ ଲାଗିବ କି ନାହିଁ ? କେରୋସିନ କେବେ ଶସ୍ତା ହେବ ? ଆଉ ନୂଆ ଟିକସ ବସିବ କି ନାହିଁ ? ଗୋଟିଏ ଗାଁରେ ଏଭଳି ପ୍ରଶ୍ନ ପଚାରୁଥିବା ଲୋକଙ୍କ ସଂଖ୍ୟା ଆଙ୍ଗୁଠିରେ ଗଣି ହୋଇଯାଉଥିଲେ । ଅଧିକାଂଶ ନିର୍ଲିପ୍ତ ରହୁଥିଲେ । କିଛି ଖବର ରଖୁ ନ ଥିଲେ । ସେମାନେ ଥିଲେ ବଡ଼ ସରଳ ଓ ନିରୀହ । ପଙ୍କରେ ପଶୁ ନ ଥିଲେ କି ଗୋଡ଼ ଧୋଉ ନ ଥିଲେ । ସେମାନଙ୍କୁ ସ୍ୱାର୍ଥପର କହିଲେ ସେମାନେ ଅଭିମାନ କରୁ ନ ଥିଲେ କି ତାଙ୍କର ମର୍ଯ୍ୟାଦାହାନି ହେଲା ବୋଲି ଭାବୁରୁ ନଥିଲେ । ସେମାନେ ଓ ତାଙ୍କ ଦୁନିଆ । ସେମାନେ କଥା କହୁଥିଲା ବେଳେ କାନରେ ଝିଂଟିପିଟି ଲାଞ୍ଜ ବାଡ଼େଇଲେ ସେମାନେ ଭାବୁଥିଲେ, ଝିଂଟିପିଟି ଠିକ୍ କହିଲା । ଝିଂଟିପିଟି କଥା କହେ ନାହିଁ; କାନ୍ଥରେ ମୁଣ୍ଡ କୋଡ଼େ, ଲାଞ୍ଜ ପିଟେ, ଜିଭ ହଲାଏ । ପୋକଜୋକ, ଝିଟିପତଙ୍ଗ ଖୋଜିଲାବେଳେ ସେ ତା'ର ପ୍ରବୃତ୍ତିଗତ କ୍ରିୟା କଳାପରେ ମାତିଥାଏ, କିନ୍ତୁ ସରଳ ନିରୀହ ଗ୍ରାମବାସୀ ଭାବେ ସେ ତାଙ୍କୁ ସମର୍ଥନ ଜଣାଇ ମତ କହେ ।

ଏମିତିକା କୋଟି କୋଟି ଲୋକ ଆଜି ମଧ୍ୟ ଅଛନ୍ତି । ସେମାନେ କେଉଁଠି ମଫସଲ ଗାଁରେ, ନଈପଠାରେ ବା ବଣଜଙ୍ଗଲରେ ରହୁଛନ୍ତି । ବସ୍ତିକୁ ରାସ୍ତା ନାହିଁ । ସେ ଗାଁକୁ ଟେଲିଗ୍ରାଫ ତାର ଟଣା ହୋଇନି । ତାଙ୍କ ଗାଁକୁ ସପ୍ତାହରେ ଥରେ ଡାକବାଲା ଯାଏ କି ନାହିଁ ସନ୍ଦେହ ।

ତାଙ୍କ ବନ୍ଧୁବାନ୍ଧବ ତ ସବୁ ସେଇ ଗାଁରେ କମ୍ବା ପାଖଆଖରେ । ତାଙ୍କ ପାଇଁ ଆଉ କ ଖବର ଦରକାର ? ବନ୍ୟା, ବାତ୍ୟା, ମରୁଡ଼ି ତାଙ୍କ ପାଇଁ ଦୈବୀ ଦୁର୍ବିପାକ । ସେ ସବୁ ପ୍ରାକୃତିକ ବିପଦକୁ ଈଶ୍ବର ଭରସା । କେବଳ ଭଗବତ ନୁହେଁ, ଖବରକାଗଜ ମଧ୍ୟ ଲେଖେ - ଯାହା କରିବେ ସାଇଁ, ତାହା କାହାର ହାତରେ ନାହିଁ । ତାଙ୍କ ଦେଶ, ତାଙ୍କ ପୃଥିବୀ ସବୁ ତାଙ୍କ ଗାଁରେ । ତେଣୁ ସେମାନେ କାହା ପାଖରେ ପ୍ରତିବାଦ କରିବାକୁ ଶିଖି ନାହାନ୍ତି । ଯେଉଁ ଶିକ୍ଷିତ ଓ ସଭ୍ୟମାନେ ତାଙ୍କର ଏ ଧାରଣା ବଦଳାଇବାକୁ ଚାହାନ୍ତି, ସେମାନେ ପ୍ରଥମେ ତାଙ୍କର ପହିଲ ନମ୍ବର ଶତ୍ରୁ ମନେହୁଅନ୍ତି ।

## ଟେଲିଫୋନର ମଜା

ସେ ଭାଇମାନେ କ'ଣ ସେଇପରି ରହିବେ ? ଆମେ ଯୋଜନା ପରେ ଯୋଜନା ଗଢ଼ିବା । ଯୁଗ ପରେ ଯୁଗ ବଦଳାଇବା; କିନ୍ତୁ ସେମାନେ ଯେଉଁ ତିମିରେ ସେଇ ତିମିରେ । ବାପୁ ସେମାନଙ୍କ ପାଇଁ କାନ୍ଦୁଥିଲେ । କହୁଥିଲେ — ଏ ଦେଶରେ ଜଣେ କେହି ଉପାସରେ ରହିବ ନାହିଁ । ସମସ୍ତେ ତିରଙ୍ଗା ପତାକା ତଳେ ଆସି ଠୁଳ ହେବେ, ଜନଗଣ-ମନ ଅଧିନାୟକଙ୍କ ଜୟଗାନ କରିବେ । କୁଆଡ଼େ ଗଲେ ଗାନ୍ଧି ? କୁଆଡ଼େ ଗଲେ ବିନୋବା ? ବର୍ଷକେ ଥରେ ଆମେ ତାଙ୍କୁ ମନେ ପକାଉଛୁ । ତାଙ୍କ କଥା ଭୁଲିବାକୁ ବସିଲୁଣି ।

ଗାନ୍ଧି ଜନତା ଭିତରେ ଜନାର୍ଦ୍ଦନଙ୍କୁ ଦେଖୁଥିଲେ । ତାଙ୍କର ଭେଦାଭେଦ ନଥିଲା । ସେ ସତ କହୁଥିଲେ, ଅହିଂସା ଆଚରଣ କରୁଥିଲେ, ମଣିଷକୁ ବିଶ୍ବାସ କରୁଥିଲେ, ପ୍ରତି ଜୀବକୁ ଭଲ ପାଉଥିଲେ । ବିନୋବା ଜଗତର ଜୟଗାନ କରୁଥିଲେ । ଆମେ ସେଇ ବାଣୀକୁ ଭୁଲିଗଲେ ଚଳିବ ନାହିଁ । ଯେଉଁମାନେ ଅନ୍ଧାରରେ ଅଣ୍ଡାଳ ହେଉଛନ୍ତି, ତାଙ୍କୁ ବାଟ ଦେଖାଇବା ଆମର କର୍ତ୍ତବ୍ୟ । ସେଥିପାଇଁ ତାଙ୍କ ଘରେ ରେଡ଼ିଓ ରଖିବାକୁ ହେବ । ତାଙ୍କ ଗାଁରେ ଟେଲିଭିଜନ ଖଞ୍ଜା ହେବ ।

ସେମାନେ ଆକାଶବାଣୀ ଶୁଣିବେ, ଦୂରଦର୍ଶନରେ ଦେଖିବେ—ଏ ଦେଶ ପାଇଁ ବିଭିନ୍ନ ଦଳ କାର୍ଯ୍ୟ କପରି ଚାଲିଛି, ଶିକ୍ଷିତ ଅର୍ଦ୍ଧଶିକ୍ଷିତ ବା

ଅଶିକ୍ଷିତ ବେକାରଙ୍କ ପାଇଁ ସ୍ୱାବଲମ୍ବନ ଯୋଜନା ଉପରେ ଖଞ୍ଜାହୋଇଛି, ବ୍ୟାଙ୍କ ଲକ୍ଷ ଲକ୍ଷ ଟଙ୍କା ସମ୍ବଳ ଦେଉଛି । ଉନ୍ନତ ମଞ୍ଜି ସଂରକ୍ଷଣ, ପୋକମରା ଔଷଧ ବ୍ୟବହାର, ମତ୍ସ୍ୟଚାଷ, କୁକୁଡ଼ା ପାଳନ, ଚକବନ୍ଦୀ—ଚାଷ ସବୁ ସେମାନେ ଶିଖିବେ । କୋଟି କୋଟି ଟଙ୍କା ଖର୍ଚ୍ଚରେ ୩୬ ହଜାର କିଲୋମିଟର ଉଚ୍ଚତାକୁ ଯାଇଥିବା ଇନ୍‌ସାଟ ସେମାନଙ୍କୁ ଦୂରଦର୍ଶନ କାର୍ଯ୍ୟକ୍ରମ ଓ ରେଡ଼ିଓ ବିବରଣୀ ଯୋଗାଇବ । ଝଡ଼ ଆସି କେଉଁଠି ହେଲଣି, କେତେ ବୃଷ୍ଟିପାତର ଆଶଙ୍କା, ଟଙ୍ଗପାଳ ଦଳ କୁଆଡ଼େ ମୁହାଁଇଛନ୍ତି—ଏସବୁ ବାର୍ତ୍ତା ସେମାନେ ଆଗରୁଆ ପାଇଯିବେ । ଆମେ ପିଲା ପଢ଼ିଥିଲୁ "ଟେଲିଫୋନର ମଜା, ଶହେକୋଶରୁ ଆଣ୍ଠ ସାଥିରେ କଥା କହୁଛି ଅଜା" । ଏବେ ଉପଗ୍ରହ ଶହେ କୋଶକୁ ସହସ୍ର କୋଶ ବଢ଼ାଇ ଦେବ ।

## ଘରଣୀଙ୍କ ହାତବାରସୀ

ସେ ଦିନ ଜଣେ ଅଫିସରଙ୍କ ସ୍ତ୍ରୀ ଆମ ଘରକୁ ବୁଲି ଆସିଥିଲେ । ଦେଖି କାବା ହେଲେ ଯେ, ଆମ ଘରେ ଟେଲିଫୋନ ନାହିଁ । ଏଥିରେ ବିସ୍ମିତ ହେବାର କଅଣ ଅଛି ? ଭାରତରେ ତ କୋଟି କୋଟି ଲୋକ ଟେଲିଫୋନର ସୁଯୋଗ ପାଉ ନାହାନ୍ତି । ତାହା ଶୁଣି ସେ କହିଲେ, "ଯେଉଁ କୋଟି କୋଟିଙ୍କର ନାହିଁ, ତାଙ୍କର କାଳେ କାଳେ ରହିବ ନାହିଁ । ଘୁର୍ଣ୍ଣିରେ ଟେଲିଫୋନ୍ ନ ରହିଲେ ଦଣ୍ଡେ ରହି ହେବନି । ବରଂ କଟକରେ ମଶାରୀ ନ ଥିଲେ ମାମେ ଶୋଇ ହେବ; କିନ୍ତୁ ଘୁର୍ଣ୍ଣିରେ ଟେଲିଫୋନ ଅଚଳ ହେଲେ ଅଭ୍ୟସ୍ତମାନେ ଅଣନିଃଶ୍ୱାସୀ ହୋଇଯିବେ ।" ଘରରେ ତାଙ୍କ ଗାଈଗୋରୁ ଉପାସ ରହିବେ, କୁକୁଡ଼ା ଧକେଇବେ, ବାଡ଼ି ବଗିଚାର ଫୁଲଗଛ ଝାଉଁଳି ପଡ଼ିବ, ସିନେମା ବେଳ ଗଡ଼ିଯିବ, ପାଟିରେ ଟିକିଏ ଆଉଁଷ ବାଜିବ ନାହିଁ । ଟେଲିଫୋନ ସହିତ ଏହାର ସମ୍ପର୍କ ହେଲା—ସହଯୋଗୀଙ୍କ ସହିତ ଯୋଗାଯୋଗ ଛିନ୍ନ ହୋଇଯିବା । ଟେଲିଫୋନ ଯୋଗାଯୋଗର ଏକ ପ୍ରଧାନ ଉପକରଣ । ରକ୍ଷା, ଟେଲିଫୋନ ଆସିବା ଆଗରୁ ଏ ଘରଣୀମାନେ ଧରଣୀ ବକ୍ଷକୁ ଆସି ନ ଥିଲେ !

୧୮୩୭ରେ ଟେଲିଗ୍ରାଫ ବାହାରିଲା । ସାଙ୍କେତିକ ଭାଷାରେ ଆମେ କେବଳ ଜରୁରୀ ବା ସାଙ୍ଘାତିକ ବାର୍ତ୍ତା ଆଦାନ ପ୍ରଦାନ କରୁଥିଲୁ । ଯେଉଁ ଗାଁକୁ ତାର ଟଣା ହୋଇ ନ ଥିଲା, ସେ ଗାଁକୁ ଟେଲିଗ୍ରାମ ଗଲେ ହୋଇଯାଏ । ଏବେ ବି ଗୋଟିଏ ଗୋଟିଏ ଗାଁରେ ଟେଲିଗ୍ରାମ ଆଣି ଦଲେ ପଡନ୍ତି । ତା'ପରେ ଟେଲିଫୋନ ବାହାରିଲା । ତାହା ହେଉଛି ୧୮୭୬ ମସିହା । ଜମା ଶହେ ବର୍ଷ ତଳର କଥା । ନ୍ୟୁୟର୍କର ବଜାର ପ୍ରଦର୍ଶନୀରେ ବେଲ୍ ତାଙ୍କ ଟେଲିଫୋନ ଯନ୍ତ୍ର ପ୍ରଦର୍ଶନ କରୁଥାନ୍ତି । ପ୍ରଦର୍ଶନୀର ମୁଖ୍ୟ ଅତିଥି ହୋଇଥିଲେ ବ୍ରାଜିଲ ସମ୍ରାଟ ଡମ୍ପେଡ୍ରୋ । ସେ ଯନ୍ତ୍ରଟି କାନରେ ଦେଇ ଚମକି ପଡ଼ିଲେ । ଚିତ୍କାର କରି ଉଠିଲେ, "ହେ ଭଗବାନ । ଏ ଯନ୍ତ୍ରଟି ପୁଣି କଥା କହୁଛି ?" ସେହି ପ୍ରଦର୍ଶନୀରେ ଅନ୍ୟ ଜଣେ ବିଶିଷ୍ଟ ଅତିଥି ଥିଲେ ବ୍ରିଟିଶ ବୈଜ୍ଞାନିକ ସାର୍ ଉଇଲସନ୍ । ତାଙ୍କ ଗବେଷଣା ପାଇଁ ସେ ପୃଥିବୀବିଖ୍ୟାତ ହୋଇଥିଲେ । ଆମେରିକାରୁ ଫେରିଲା ବେଳକୁ ତାଙ୍କୁ ପଚରାଗଲା, "ଆମେରିକା କେମିତି ଲାଗିଲା ?' ସେ କହିଲେ, "ମୁଁ ଆମେରିକାରେ ଅନେକ ଜିନିଷ ଦେଖିଲି । ସେଗୁଡ଼ିକ ମଧ୍ୟରେ ସବୁଠାରୁ ଆଶ୍ଚର୍ଯ୍ୟକର ଜିନିଷ ହେଲା ବେଲ୍‌ଙ୍କ ଟେଲିଫୋନ୍" । ଶହେବର୍ଷ ତଳେ ବିଖ୍ୟାତ ବୈଜ୍ଞାନିକ ଯାହା ହଠାତ୍ କହି ପକାଇଥିଲେ ତାହା ଆଜି ଅକ୍ଷରେ ଅକ୍ଷରେ ସତ୍ୟ । ମାତ୍ର ୨୫ ବର୍ଷ ଭିତରେ ଆମେରିକାର ଏ ମୁଣ୍ଡରୁ ସେ ମୁଣ୍ଡକୁ ଟେଲିଫୋନ୍ ତାର ଟଣା ହୋଇଗଲା । ଟେଲିଫୋନ୍‌ର ରଜତ-ଜୟନ୍ତୀରେ ମୁଖ୍ୟ ଅତିଥି ହେଲେ ଟେଲିଫୋନର ଉଦ୍ଭାବକ ଗ୍ରାହମ୍‌ବେଲ୍ । ତାଙ୍କୁ କୁହାଗଲା ଟେଲିଫୋନ ଉଦ୍ଭାବନବେଳେ ସେ ଯେଉଁ ପ୍ରଥମ କଥା କେଇପଦ କହିଥିଲେ ତାକୁ ହିଁ ଟେଲିଫୋନରେ କହନ୍ତୁ । ଟେଲିଫୋନ ଉଠାଇ ସେ କହିଲେ "ଓ୍ୱାଟସନ, କାମ ଅଛି ଶୀଘ୍ର ଆସ ।" ସେ ମୁଣ୍ଡରୁ ଓ୍ୱାଟସନ କହିଲେ, "ଆଜି ଶୀଘ୍ର ଯାଇ ପାରିବନି ବେଲ୍, ତମ ପାଖକୁ ଯିବାକୁ ମୋତେ କେତେଦିନ ଲାଗିଯିବ ।" ଓ୍ୱାଟସନ୍ ଥିଲେ ସାନଫ୍ରାନ୍‌ସିସ୍-କୋରେ । ଉଦ୍ଭାବନ୍‌ବେଳେ ସେ ଥିଲେ ଏକ ପାଖ କୋଠରୀରେ । ଉଦ୍ଭାବନବେଳେ ଯେଉଁ ଟେଲିଫୋନ ତାର ଦୁଇଟି ପାଖାପାଖି କୋଠରୀ ମଧ୍ୟରେ ସଂଯୁକ୍ତ ହୋଇଥିଲା । ତାହା ମାତ୍ର ୨୫ ବର୍ଷ ଭିତରେ ନ୍ୟୁୟର୍କରୁ ସାନଫ୍ରାନ୍‌ସିସକୋ ପର୍ଯ୍ୟନ୍ତ ହଜାର ହଜାର କିଲୋମିଟର ଦୂର ଲମ୍ବିଗଲା । ଶହେବର୍ଷ ପରେ ଆଜି ଦୁନିଆର କୌଣସି ଦୂରତାକର ଯୋଗାଯୋଗ ପାଇଁ ତାହା ପ୍ରଧାନ ଉପକରଣ

## କଥା ଓ ଚିତ୍ର

ଟେଲିଫୋନର ପୂର୍ବ ଅବସ୍ଥା ଆଉ ନାହିଁ । ସେଥିରେ ଯଥେଷ୍ଟ ଉନ୍ନତି ହୋଇଛି । ଦୂରକୁ ଦୂରକୁ ଗଲେ ସ୍ୱର କ୍ଷୀଣ ହେଉ ନାହିଁ । ପ୍ରତି ମହାଦେଶ ଆଜି ଟେଲିଫୋନ ଦ୍ୱାରା ସଂଯୁକ୍ତ । ମାଇକ୍ରୋଓ୍ୱେଭ ବା ସୂକ୍ଷ୍ମ ତରଙ୍ଗର ସାହାଯ୍ୟ ନେଇ ତାହା ଆଜି ଅଧିକ ଉନ୍ନତ ଓ ବ୍ୟାପକ ହୋଇଛି । ଚେଷ୍ଟା କରାଗଲାଣି, ଲେଜର ରଶ୍ମି ସାହାଯ୍ୟରେ ଚିତ୍ର ଓ ବାର୍ତ୍ତା ଉଭୟ ପଠାଇ ହେବ । ସେତେବେଳେ ଅଜା ଆଉଙ୍କ ମଜା ଆହୁରି ବଢ଼ିଯିବ । ହଜାରେ ହଜାରେ କିଲୋମିଟର ଦୂରରେ ଥାଇ ସେମାନେ କେବଳ ଆଳାପ ଆଲୋଚନା କରିବେ ନାହିଁ, ପରସ୍ପରକୁ ଦେଖି ବି ପାରିବେ ।

## ବେତାର

ଟେଲିଫୋନ ବାହାରିବାର ମାତ୍ର ୧୪/୧୫ ବର୍ଷ ପରେ ବିନା ତାରରେ କପରି ଖବର ପଠାଇ ହେବ, ତାହାର ପରୀକ୍ଷା କଲେ ମାର୍କୋନି । ସେତେବେଳକୁ ସେ ୧୭।୧୮ ବର୍ଷର ପିଲା । ବଗିଚାରେ ଦୁଇଟି ଖୁଣ୍ଟ ପୋତି ତାଙ୍କ ବହିପଢ଼ା ପାଠ ସେ ପରୀକ୍ଷା କରୁଥିଲେ । ପରୀକ୍ଷା ତାଙ୍କର ସଫଳ ହେଲା । ବିନା ତାରରେ ସମ୍ବାଦ ପଠାଇ ହେଲା । ସେଥିରୁ ରେଡ଼ିଓ ଓ ରେଡ଼ାରର କୌଶଳ ମିଳିଗଲା । ରେଡ଼ାର ସାହାଯ୍ୟରେ ଆମେ ଶତ୍ରୁପକ୍ଷ ଉଡ଼ାଜାହାଜର ଗତିବିଧି ଠଉରେଇଲୁ । ଉଡ଼ାଜାହାଜ କେଉଁ ଆଡ଼ୁ ଆସୁଛି, ତା'ର ବେଗ କେତେ, ତାହା କେତେ ଦୂରରେ ଅଛି—ଏସବୁ ମଣିଷକୁ ହିସାବ କରିବାକୁ ପଡ଼ିଲା ନାହିଁ । କମ୍ପ୍ୟୁଟର ଖଞ୍ଜା ହେଲା । ସେ ଆଗେ ଆଗେ ହିସାବ କରି ବନ୍ଧୁକର ଦିଗ ଠିକଣା କରି ଉଡ଼ାଜାହାଜକୁ ଗୁଳି ଲକ୍ଷ୍ୟ କଲା । ସବୁ କିମିତିକ ମଧ୍ୟରେ ଘଟିଯାଏ । ଶତ୍ରୁ ଚେଷ୍ଟା କଲା, ତା'ର ବିମାନ କପରି ରେଡ଼ାରର ସତର୍କ ଦୃଷ୍ଟି ଏଡ଼ାଇ ଦେବ । ରେଡ଼ାରର ମଧ୍ୟ ଉନ୍ନତି ଚାଲିଛି—କପରି ତା' ନଜରରୁ ବିମାନ ଖସି ଯାଇ ପାରିବନି । ବଡ଼ ଖାସ୍ ଏ ପ୍ରତିଯୋଗିତା, ଚାଲିଛି ଓ ଚାଲିବ । ବୋଧହୁଏ ପୃଥିବୀରେ ମଣିଷ ଥିବାଯାଏ ଏ ସଂଘର୍ଷ ରହିବ ।

## ସାଗର-ସମ୍ରାଟର ଚକ୍ଷୁ

ତେଣେ ସମୁଦ୍ରରେ ରେଡ଼ାର ପରି ସୋନାର ଜାହାଜକୁ ଜଗିରଖି ବାଟ କଢ଼ାଉଛି । ରେଡ଼ାରରୁ ବିଦ୍ୟୁତ୍‌ ଚୁମ୍ବକ ତରଙ୍ଗ ପଠାଯାଏ । ସମୁଦ୍ରର

ଲୁଣପାଣି ତାକୁ ଶୋଷି ନେବ । ତେଣୁ ରେଡ଼ାର ବଦଳରେ ସୋନାରରୁ ଧ୍ୱନି ତରଙ୍ଗ ପଠାଯାଏ । ତାହାର ପ୍ରତ୍ୟାବର୍ତ୍ତନ ସମସ୍ତ ବ୍ୟବଧାନରୁ ଜଣାପଡ଼େ—କେଉଁଠି ତିମିମାଛ ପହଁରୁଛି, ପାହାଡ଼ ବୃଦ୍ଧିରହୁଛି କମ୍ବା ବୁଡ଼ାଜାହାଜ ପଇଁତରା ମାରୁଛି । ସେଇ ଅନୁସାରେ ଜଳଜାହାଜ ସାଗର-ସମ୍ରାଟ ତାହାର ଗନ୍ତବ୍ୟପଥ ଠିକଣା କରେ ।

## ବୁଦ୍ଧିର ପରାକାଷ୍ଠା

ରେଡ଼ିଓ ତରଙ୍ଗ ସାହାଯ୍ୟରେ କେବଳ ପୃଥିବୀରେ ନୁହେଁ, ପୃଥିବୀ ବାହାରେ ଥିବା ଗ୍ରହ ନକ୍ଷତ୍ର ସହିତ ଯୋଗାଯୋଗ ସ୍ଥାପନା କରାଗଲାଣି । ସେଦିନ ଚନ୍ଦ୍ରପୃଷ୍ଠରେ ଥିବା ପ୍ରଥମ ଚନ୍ଦ୍ରଯାତ୍ରୀ ଆର୍ମଷ୍ଟ୍ରଙ୍ଗଙ୍କ ସହିତ ଆମେରିକାର ତତ୍‌କାଳୀନ ରାଷ୍ଟ୍ରପତି ନିକ୍ସନ ତାଙ୍କ ରାଷ୍ଟ୍ରପତି ଭବନରୁ କଥାବାର୍ତ୍ତା ହୋଇଥିଲେ । ଏପ୍ରକାର ସମ୍ବାଦ ସରବରାହରେ ଟେଲିଫୋନ, ରେଡ଼ିଓ ଓ କମ୍ପ୍ୟୁଟର ମିଶାମିଶି ହୋଇ ସମ୍ବାଦ ପ୍ରେରଣକୁ ସହଜ, ସମ୍ଭବ ଓ କ୍ଷିପ୍ରତର କରିପାରେ ।

ବିଶ୍ୱ ତୁଳନାରେ ମଣିଷ କେଡ଼େ କ୍ଷୁଦ୍ର । କିନ୍ତୁ ତା' ପାଖରେ ଆଜି ମହଜୁଦ ହୋଇଛି—ଟେଲିଗ୍ରାଫ୍, ଟେଲିଫୋନ, ଟେଲେକ୍ସ, ଟେଲିପ୍ରିଣ୍ଟର, ରେଡ଼ାର, ସୋନାର, ରେଡ଼ିଓ, ଟେଲିଭିଜନ ଓ ଯୋଗାଯୋଗ ଉପଗ୍ରହ । ସେଥିପାଇଁ କେବଳ ପୃଥିବୀ ନୁହେଁ, ବିରାଟ ବିଶ୍ୱ ଆଜି କ୍ଷୁଦ୍ର ହେବାକୁ ବସିଲାଣି । ୩୬ ହଜାର କିଲୋମିଟର ଉଚ୍ଚରେ ଥିବା ଇନ୍‌ସାଟ୍‌କୁ ପୃଥିବୀପୃଷ୍ଠରୁ ମଣିଷ ଆଜି ବରକୋଳି ଗଛପରି ହଲେଇଲା । ବୁଦ୍ଧିର କି ପରାକାଷ୍ଠା !

## ଯୋଗାଯୋଗର ବ୍ୟବଧାନ

କିନ୍ତୁ କେତେଜଣ ଏହାର ସଦୁପଯୋଗ କରୁଛନ୍ତି ? କୋଟି କୋଟି ଆଜି ନିରକ୍ଷର, ନିରନ୍ନ, ନଗ୍ନ, ନିରାଶ୍ରୟ ହୋଇ କେବଳ ହାହାକାର କରୁଛନ୍ତି । ଅନ୍ୟର ହାତଟେକା ପଡ଼ି ସାହାଯ୍ୟ ଓ ଅନୁଗ୍ରହକୁ ସେମାନେ ହାତ ପାତୁଛନ୍ତି । ତାଙ୍କ ବସ୍ତି ବାହାରେ ଥିବା ସରକାର, ସଭ୍ୟ ଓ ଶିଳ୍ପତିଙ୍କୁ ସେମାନେ ଶଙ୍କିତ ହୋଇ ଗୁହାଁନ୍ତି । ଶୋଷକ ଓ ମହାଜନମାନେ

ଏହି ବ୍ୟବଧାନର ସଦୁପଯୋଗ କରୁଛନ୍ତି । ଏବେ ଯୋଗାଯୋଗ ଜରିଆରେ ସେମାନଙ୍କୁ ଜାଗ୍ରତ କରାଇବାକୁ ହେବ । ରେଡ଼ିଓ ଓ ଟେଲିଭିଜନ ଦ୍ୱାରା ସେମାନେ ଶୁଣନ୍ତୁ ଓ ଦେଖନ୍ତୁ ତାଙ୍କ ଗାଁ ବାହାରେ କ'ଣ ହେଉଛି । ତା'ପରେ ତାଙ୍କ ବିବେକ ଚିତ୍କାର କରିବ ଏକ ପରିବର୍ତ୍ତନ ପାଇଁ । ବିବେକର ସେଇ ବ୍ୟାକୁଳତା ତାଙ୍କୁ ବିଚଳିତ ଓ ଅଥୟ କରିବ । ଆମେ ବାଟ କଢ଼େଇବା ଆଗରୁ ସେମାନେ ବାଟ କାଟି ଆଗେଇ ଆସିବେ । କ'ଣ ସତ, କ'ଣ ମିଛ. ସେମାନଙ୍କୁ ଅଛପା ରହିବ ନାହିଁ । ଅନ୍ଧାର ଅଶାନ୍ତିର କାରଣ, ଅନ୍ଧାରର ସ୍ଥିରତା ନାହିଁ; ଥରେ ସେଥିରେ ଅଭ୍ୟସ୍ତ ହେଲେ ଆଉ ଅଶାନ୍ତିର ଭୟ ରହେ ନାହିଁ । ଅନ୍ଧାର ଡରମାଡ଼େ ନାହିଁ । କେବଳ ଯେଉଁମାନେ ଆଲୁଅରେ ଥାଆନ୍ତି, ସେଇମାନେ ଅନ୍ଧାରକୁ ଡରନ୍ତି । ଯେଉଁମାନେ ଅନ୍ଧାରରେ ଅଛନ୍ତି, ତାଙ୍କୁ ଥରେ ଆଲୋକର ଆକର୍ଷଣ ଦେଖାଇଲେ ସେମାନେ ସେଠି ସ୍ଥିର ହୋଇ ରହିପାରିବେ ନାହିଁ । ସେହି ଅସ୍ଥିରତା ହିଁ ଆମର ଏ ସଭ୍ୟତା ବା ସାମାଜିକତା । ଆମ ଭିତରୁ ଅର୍ଦ୍ଧାଧିକ ଲୋକଙ୍କୁ ଅନ୍ଧକାରରେ ରଖି ଆମେ କେବେହେଲେ ପରିପୂର୍ଣ୍ଣ ସଭ୍ୟତା ବା ଆଦର୍ଶ ସମାଜ ଗଢ଼ିପାରିବା ନାହିଁ । ସେଥିପାଇଁ କୋଟି କୋଟି ଟଙ୍କା ବ୍ୟୟ କରି ଭୂସ୍ଥିର କକ୍ଷରେ ଆମେ ସ୍ଥାପନ କରିଛୁ ଯୋଗାଯୋଗର ପ୍ରତୀକ ଇନ୍‌ସାଟ ବା ଇଣ୍ଟେଲ୍‌ସାଟ । ଆମେ ତା'ର ନିର୍ଦ୍ଦେଶ ନ ମାନିଲେ ସଭ୍ୟତାର ପ୍ରକୋପରେ ଅସ୍ତିତ୍ୱ ହରେଇବା ।



# ଆଗାମୀ କାଳର ସମସ୍ୟା :
# ଶକ୍ତି ସଂକଟ

ଆମ ଗାଁରେ ଲୋକେ କାଠ ଜାଳୁଛନ୍ତି । ସହରରେ ଅନେକଙ୍କର କୋଇଲା ଚୁଲି ଅଛି । ଏବେ ବଡ଼ବଡ଼ଆମାନେ ଗ୍ୟାସରେ ରୋଷେଇ କଲେଣି । କିରାସିନି ଷ୍ଟୋଭ ଯାହାର ଅଛି, କେବଳ ଚା କରିବା ବା ପାଣି ଗରମ କରିବାରେ ଲାଗୁଛି । ଇଲେକଟ୍ରିକ ହିଟର ବା ବୈଦ୍ୟୁତିକ ଚାପକର ବ୍ୟବହାର କଦବା କ୍ୱଚିତ ଦେଖିବାକୁ ମିଳେ । ଯାହାହେଲେ ବି ସମସ୍ତେ ଆଜି ହଇରାଣ ।

କାଠ ଦର ବଢ଼ି ଚାଲିଛି । ରେଳ ଚଳାଚଳରେ ଟିକିଏ ଏଣେ ତେଣେ ହେଲେ କୋଇଲା ମିଳୁ ନାହିଁ । ତାହା ବି ମୂଲ୍ୟବାନ ହୋଇ କଳାସୁନା ପାଲଟି ଗଲାଣି । ଗ୍ୟାସ ପାଇଁ ମାସ ମାସ ଧରି ଅପେକ୍ଷା କରିବାକୁ ପଡ଼ୁଛି । ଭାଗ୍ୟରେ ଥିଲେ ଗ୍ୟାସ ଚୁଲିଟିଏ କିଣିବାକୁ ମିଳୁଛି । କିରୋସିନି ଓ ଗାଁରେ ବତି ଜାଳିବାକୁ ନିଅଣ୍ଟ । ତାକୁ ରୋଷେଇ ପାଇଁ ଜାଳି ବସିଲେ ଦେବ କିଏ ? ଆଉ ବିଦ୍ୟୁତ—ତାହାର ବି ଅଭାବ । ଏବେ ତ ନିୟମିତ କଲିକତା ସହର ଅନ୍ଧାର ହେଉଥିଲା । ଖରାଦିନେ ଅନେକ କଳକାରଖାନାକୁ ବନ୍ଦ କରି ଦିଆ ହୋଇଥିଲା ।

ସମସ୍ତେ ଅନୁଭବ କଲେଣି, ଏ ହେଉଛି ଜାଳେଣିର ଅଭାବ, ଶକ୍ତି ସଙ୍କଟର ସୂଚନା । ଆଜି ଆରମ୍ଭ ହୋଇଛି, କାଲି ଉତ୍କଟ ହେବ । ଖାଲି ଏହା ଆମ ରୋଷାଇ ଘର ସମସ୍ୟା ନୁହେଁ; ଏଥିପାଇଁ ସମସ୍ତଙ୍କ ମୁଣ୍ଡ ବଥାଇଲାଣି । ଘରଣୀଙ୍କଠାରୁ ଆରମ୍ଭ କରି ମିଲ୍ ମାଲିକ, ଶିଳ୍ପପତି, ନେତା ସମସ୍ତେ ଅଥୟ ହେଲେଣି । ସାରା ପୃଥିବୀରେ ଚହଳ ପଡ଼ିଛି । କୋଇଲା ଘର

ସର ଯାଉଛି, ପେଟ୍ରୋଲ ନିଅଣ୍ଟ, କାଠ କାଟିଲେ ବଣ ଫାଙ୍କା ହୋଇଯିବ, ମହାଘରୁ ଯାଇ କାନ୍ତାରରେ ପଡ଼ିବା, ମେଘ ବାଟ ଭୁଲି ବୁଲି-ଯିବ, ମାଟି ଧୋଇ ହୋଇଯିବ । ଦେଖାଦେବ ଖାଦ୍ୟ ସମସ୍ୟା, ମରୁଡ଼ି, ମହାମାରୀ ଦୁର୍ଭିକ୍ଷ । ଏ ଦୁଃଖରୁ ସେ ଦୁଃଖ ବଳିଯିବ । ଦିନେ ସକାଳୁ ସଞ୍ଜଯାଏ ଆଦିମ ମଣିଷ ବଣରେ ବୁଲି ଆହାର ଖୋଜୁଥିଲା । ଏବେ ଏ ସଭ୍ୟମାନବ ଜାଳେଣି କାଠ ପାଇଁ ବଣରେ ଦିନ ଦିନ ବିତାଇବ । ସହରରେ କାଠ କିଣାଯାଏ ଶୁଣି ଗାଁ ଲୋକେ ହସୁଥିଲେ । ଏବେ ଗାଁରେ ଚୁଲି ଜାଳିବାକୁ ଲୋକେ ବାଉ ଫାନ୍ଦ ଫିକର କଲେଣି । ଏଥିରୁ ମନେହୁଏ, ପ୍ରକୃତିରେ ଶକ୍ତି ସଙ୍କଟ ଘନେଇ ଆସୁଛି ।

ମଣିଷ ବଞ୍ଚି ରହିବା ପାଇଁ ଶକ୍ତି ଦରକାର । ତାହା ହେଲା ମାଂସ-ପେଶୀସ୍ଥ ଶକ୍ତି । ତାହା ଖାଦ୍ୟରୁ ମିଳିଯାଏ । ଏଥିପାଇଁ ଉପଯୁକ୍ତ ଜୀବନୀକା-ଭର ସୁସ୍ୱାଦୁ ଖାଦ୍ୟ ପ୍ରସ୍ତୁତ କରିବାକୁ ହୁଏ । ଫଳରେ ଖେଳକୁଦ ଦୌଡ଼ା-ଦୌଡ଼ି କରି ମଣିଷ ନୀରୋଗ ଓ ସୁସ୍ଥ ଜୀବନ ଯାପନ କରେ; କିନ୍ତୁ ଜୀବନକୁ ଅଧିକ ସୁଖମୟ, ଜଞ୍ଜାଳହୀନ, ସମୃଦ୍ଧିଶାଳୀ ଓ ନିରାପଦ କରିବା ପାଇଁ ତାହାର ଦରକାର ଉନ୍ନତ ଯାନବାହନ, ବିରାଟ ଅଟ୍ଟାଳିକା, ବିପୁଳ ଶିଳ୍ପ ସମ୍ପଦ ଓ ସୁଦୃଢ଼ ପ୍ରତିରକ୍ଷାବ୍ୟବସ୍ଥା । ଏଭଳି ଉଚ୍ଚଆକାଂକ୍ଷାର ଚରିତାର୍ଥ ପାଇଁ ଆବଶ୍ୟକ ପର୍ଯ୍ୟାପ୍ତ ଶକ୍ତି । ସେଥିପାଇଁ ଆଜି ଦେଶ ଦେଶ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା । ଫଳରେ ପ୍ରକୃତିର ଏକଦା ସସୀମ ଶକ୍ତି ଭଣ୍ଡାର ଆଜି କ୍ଷୟ ହୋଇ ନିଃଶେଷ ହେବାକୁ ବସିଲାଣି । କିଏ ଜାଣନ୍ତି ?

୧୮୫୦ ମସିହା ମଧ୍ୟରେ ଆମେ ଯେତିକି କୋଇଲା ଖର୍ଚ୍ଚ କରିଥିଲୁ, ଆଉ ମାତ୍ର ଶହେ ବର୍ଷ ମଧ୍ୟରେ ସେତିକି କୋଇଲା ଖର୍ଚ୍ଚ ହୋଇଯିବ । ଖର୍ଚ୍ଚ ହାର କୋଡ଼ିଏ ଗୁଣ ବଢ଼ିଲାଣି । ଆମେ ବଢ଼ିଛୁ, ଆମ ଚାହିଦା ବଢ଼ୁଛି; ଏଣେ ଆମ ସମ୍ପଦ କମୁଛି । ତାହାହେଲେ ତ ସଙ୍କଟ ଅନିବାର୍ଯ୍ୟ । ଯାହା ହିସାବ ହୋଇଛି, ଆଉ ମାତ୍ର କେତେ ଶହ ବର୍ଷ ପରେ ଆମର ଯାହା କୋଇଲା, ତେଲ ବା ଗ୍ୟାସ ଅଛି, ସବୁ ସରିଯିବ । ସେତେବେଳେ ଆମେ କ'ଣ କରିବା ?

ଏଥିପାଇଁ ଆମ ପାଖରେ ଦୁଇଟି ଉପାୟ ଅଛି । ଗୋଟିଏ ହେଲା, ଆମ ପାଖରେ ଯାହା ଅଛି ତାକୁ ରଖିଥୋଇ ଖର୍ଚ୍ଚ କରିବା; ଅନ୍ୟଟି ହେଲା,

କିନ୍ତୁ ଅନ୍ୟ ପନ୍ଥା ଖୋଜିବା । ରଖିଥୋଇ ଖର୍ଚ୍ଚ କରିବା ଯଦିଓ ଆମର ଉଚିତ, ତଥାପି ତାହା ଏକ ସ୍ଥାୟୀ ସମାଧାନ ନୁହେଁ । ଯାହା କେତେ ଶହ ବର୍ଷରେ ସରିଥାନ୍ତା, ଏମିତି କାଣ୍ଡିକୁଣ୍ଡି ହୋଇ ଚଳେଲେ ତାହା ହୁଏତ ହଜାରେ ବର୍ଷ ଯିବ । କିନ୍ତୁ ଦିନେ ନ ଦିନେ ତାହା ସରିଯିବ । ଏହି ସରିଯିବା ଚିନ୍ତା ଆମକୁ ସବୁବେଳେ ଅସ୍ଥିର କରିବ । ଢୋକେ ପିଇ ଦଣ୍ଡେ ଖାଇ ଅବସ୍ଥାରେ ଖାଇ ରହିବାର ଆନନ୍ଦ ମିଳେ ନାହିଁ । ଯେ ସବୁଦିନେ ଭୋଜିଭାତ ଖାଉଛି, ତା'ପାଇଁ ସାମୟିକ ଉପବାସ ହିତକର । କିନ୍ତୁ ଯାହାର ହାଣ୍ଡିରେ ଦି ବେଳା କଳା ପଡ଼ୁନାହିଁ, ତାକୁ ଉପବାସର ମାହାତ୍ମ୍ୟ ବୁଝେଇବା ବୃଥା । ଉନ୍ନତ ବିଭବଶାଳୀ ଦେଶମାନଙ୍କୁ ରଖିଥୋଇ ଖର୍ଚ୍ଚ କରିବା ସାଜେ । କିନ୍ତୁ ଯେଉଁମାନେ ଉନ୍ନତିର ସ୍ୱପ୍ନ ଦେଖୁଛନ୍ତି, ଯେଉଁ ଦେଶରେ ଶତକଡ଼ା ଅଶୀଭାଗ ଲୋକେ ଦାରିଦ୍ର୍ୟ ସୀମାରେଖା ତଳେ, ସାଧାରଣ ଜୀବନଧାରଣର ନିମ୍ନସ୍ତରରେ ଅଛନ୍ତି, ତାଙ୍କୁ ନିୟନ୍ତ୍ରଣ କଥା କହିବା ଏକ ନୈତିକ ଅପରାଧ-ମାନବିକତାର ଅବମାନନା । କିନ୍ତୁ ବିଚିତ୍ର କଥା, ଅଭାବୀ ଦେଶମାନେ ମାନବିକତାର ଅବମାନନା କରି ନୈତିକ ଅପରାଧ କରିବାକୁ ପ୍ରସ୍ତୁତ; ଅଥଚ ଧନୀ ପୁଞ୍ଜିଶାଳୀ ଦେଶମାନେ ବ୍ୟୟ ବହୁଳତାର ଦୁର୍ନୀତି କରି ଲାଗିଛନ୍ତି ।

ବର୍ତ୍ତମାନ ବିକଳ୍ପ ଉପାୟକୁ ବିଶ୍ଳେଷଣ କରିବା । ତାହାହେଲା, ଯେଉଁ ଚିରାଚରିତ ଜୀବାଶ୍ମ ଜାଳେଣି ନିଃଶେଷ ପ୍ରାୟ, ତା' ଉପରେ ନିର୍ଭର ନକରି ଅନ୍ୟ ବ୍ୟବସ୍ଥା କରିବା । ଏହା ଦୁଇ ପ୍ରକାରେ ହୋଇପାରେ । ଗୋଟିଏ ହେଲା ଏକ ଅସୀମ ଶକ୍ତି ଭଣ୍ଡାରର ସନ୍ଧାନ; ଅନ୍ୟଟି ସୀମିତ ହେଲେ ବି ଅନୁକୂଳ, ସହଜ ଓ ସୁବିଧାଜନକ ପନ୍ଥା ଅନୁସନ୍ଧାନ । ଶେଷଟି ଉପରେ ପୂରାପୂରି ନିର୍ଭର କରି ନହେଲେ ମଧ୍ୟ ତାହା ଦ୍ୱାରା ଅନେକ ପରିମାଣରେ ଶକ୍ତି ବ୍ୟୟ ଲାଘବ ହେବ ।

ଅସୀମ ଶକ୍ତିଭଣ୍ଡାର କଥା ଉଠିଲେ ଆମର ତିନୋଟି ଶକ୍ତି ସମ୍ପଦ ବିଷୟ ମନେପଡ଼େ । ତାହା ହେଲା—(୧) ପାରମାଣବିକ ଶକ୍ତି, ବିଶେଷତଃ ନିୟନ୍ତ୍ରିତ ତାପନ୍ୟୁକ୍ଲୀୟ ପ୍ରତିକ୍ରିୟା, (୨) ସୌରଶକ୍ତି ଓ (୩) ଭୂତାପ ।

ପରମାଣୁ କଥା ବହୁଦିନୁ ଚିନ୍ତା କରାଗଲାଣି । ଯେତେବେଳେ ପରମାଣୁବୋମାରେ ହିରୋସିମା ଓ ନାଗାସାକି ସହର ଧ୍ୱଂସ ବିଧ୍ୱଂସ ହୋଇଗଲା, ଜାପାନୀମାନେ ଆଣବିକ ଜ୍ୱାଳାରେ ତିଳେ ତିଳେ ଦଗ୍ଧ ହେଲେ, ସେତେବେଳେ ବିବେକୀ ବ୍ୟକ୍ତିମାନେ ପ୍ରଶ୍ନ କଲେ, ପରମାଣୁ ଭିତରେ ଯେଉଁ ଅସରନ୍ତି ଶକ୍ତି ଉତ୍ସର ସନ୍ଧାନ ମିଳୁଛି, ସେଥିରେ ଆମେ ଭସ୍ମାସୁର ପରି ଜାଳିପୋଡ଼ି ହୋଇ ମରିବା ନା ତାହାର ବିନିଯୋଗ କରି ସୁଖଶାନ୍ତିରେ ବସବାସ କରିବା ? ସବୁ ଦେଶ ଏକାଠି ହେଲେ, ନେତାଏ ଏକମତ ହେଲେ, ସମସ୍ୱରରେ ଉଚ୍ଚାରିତ ହେଲା—ଶାନ୍ତି ପାଇଁ ପରମାଣୁ । ୧୯୫୫ରେ, ଜେନିଭା ଠାରେ ଏକ ସମ୍ମିଳନୀ ଡକା ହେଲା । ଭାରତୀୟ ବୈଜ୍ଞାନିକ ହୋମି ଜାହାଙ୍ଗୀର ଭାଭା ଅଧ୍ୟକ୍ଷତା କରି କହିଲେ, "ବର୍ତ୍ତମାନ ପରମାଣୁ ଶକ୍ତିର ବିଦ୍ୟୁତ୍ ଉତ୍ପାଦନ ବ୍ୟୟ ବହୁଳ ସତ; କିନ୍ତୁ ଶକ୍ତିର ଅଭାବ ତୁଳନାରେ କୌଣସି ଶକ୍ତି ଅଧିକ ବ୍ୟୟସାପେକ୍ଷ ନୁହେଁ ।"

ସେତେବେଳେ ପରମାଣୁ ରାଷ୍ଟ୍ର କହିଲେ କେବଳ ଯୁକ୍ତରାଷ୍ଟ୍ର ଆମେରିକା, ରୁଷିଆ, ବ୍ରିଟେନ୍ ଫ୍ରାନ୍ସ ଓ କାନାଡ଼ା ପରି ମାତ୍ର ପାଞ୍ଚୋଟି ରାଷ୍ଟ୍ରକୁ ବୁଝାଉ-ଥିଲା । ସେମାନେ ଅଧିକାଂଶ ଏ ପ୍ରସ୍ତାବରେ ସହଯୋଗିତା କରିବାକୁ ରାଜି ହେଲେ । ଯୁଦ୍ଧ ପ୍ରସ୍ତୁତି ପାଇଁ ସେମାନେ ଲୁଚିଛପି ବୋମା ପରୀକ୍ଷା କଲେ ସତ; କିନ୍ତୁ ଭାରତ ପରି ଅନଗ୍ରସର ଦେଶମାନଙ୍କୁ ପାରମାଣବିକ ଯୋଜନାରେ ସାହାଯ୍ୟ କରିବାକୁ ରାଜି ହେଲେ ।

ଯୁକ୍ତରାଷ୍ଟ୍ର ଆମେରିକାର ସହଯୋଗ କାମନା କରି ଭାଭା ତାରାପୁର-ଠାରେ ୨୦୦ ମେଗାଓ୍ୱାଟ ଶକ୍ତି ଯୋଗାଣ ପାଇଁ ଏକ ପରମାଣୁ ଶକ୍ତି କେନ୍ଦ୍ର ପରିକଳ୍ପନା କଲେ । ଆମେରିକା ଏଥିପାଇଁ ଉନ୍ନତ ଧରଣର ୟୁରେନିୟମ ଯୋଗାଇବାକୁ ପ୍ରତିଶ୍ରୁତି ଦେଲା । କିନ୍ତୁ ଏଥିପାଇଁ ପର ଉପରେ ନିର୍ଭର କରିବାକୁ ପଡ଼ିବ । ଭାରତରେ ମିଳୁଥିବା ଥୋରିୟମ୍ ଓ ପ୍ରାକୃତିକ ୟୁରେନିୟମ ସାହାଯ୍ୟରେ କିପରି ପରମାଣୁଶକ୍ତି କେନ୍ଦ୍ର ଗଢ଼ି ଉଠିବ, ଏଥିପାଇଁ ସେ ଅନ୍ୟ ଯୋଜନାମାନ ଗଢ଼ିଲେ । ଦୁର୍ଭାଗ୍ୟକୁ ତାଙ୍କର ଦେହାନ୍ତ ହୋଇଗଲା । ତାଙ୍କ ଯୋଜନାଗୁଡ଼ିକ ଅଗ୍ରଗତି କରିଥିଲେ ମଧ୍ୟ ଏ ପର୍ଯ୍ୟନ୍ତ ଆଶାନୁରୂପ ଫଳ ପ୍ରଦାନ କରି ନାହିଁ । ଅନ୍ୟ ଦେଶମାନଙ୍କରେ

ପରମାଣୁ ଶକ୍ତିର ବ୍ୟବହାର ସର୍ବତ୍ର ପ୍ରସାରିତ ହେଲାଣି; କିନ୍ତୁ ଏ ପ୍ରକାର ପାରମାଣବିକ ଶକ୍ତି ପାଇଁ ଦରକାର ୟୁରେନିୟମ୍ ଓ ଥୋରିୟମ୍ ଜାଳେଣି। ତାହାର ଅସରନ୍ତି ଭଣ୍ଡାର ନୁହେଁ। ତେଲ କୋଇଲା ପରି ସେଗୁଡ଼ିକ ଦିନେ ସରିଯିବ। ସେତେବେଳେ ପୁଣି ଶକ୍ତିର ଅଭାବ ହେବ।

ତେଣୁ ଅନ୍ୟପ୍ରକାରେ ପରମାଣୁଶକ୍ତି ଲାଭ ପାଇଁ ଯୋଜନା ଚାଲିଛି। ତାହାହେଲା ନିୟନ୍ତ୍ରିତ ତାପନ୍ୟୁକ୍ଲୀୟ ପ୍ରତିକ୍ରିୟା। ଏଥିରେ ପରମାଣୁ ଖଣ୍ଡ ଖଣ୍ଡ ହୋଇ ଶକ୍ତି ଦେବ ନାହିଁ। ଅତି ଉଚ୍ଚ ତାପମାତ୍ରାରେ ହାଲୁକା ନ୍ୟୁକ୍ଲିୟସ ମିଳି ଓଜନିଆ ନ୍ୟୁକ୍ଲିୟସ ଗଢ଼ି ଉଠିବ। ସେମାନଙ୍କ ମିଳନରେ କିଞ୍ଚିତ ବସ୍ତୁ କ୍ଷୟ ହୋଇ ଜାତ ହେବ ପ୍ରଚୁର ଶକ୍ତି—ଠିକ୍ ସୂର୍ଯ୍ୟ ଯେପରି ଶକ୍ତି ଦେଉଛି। ଯାହା ତତ୍ତ୍ୱ ଦୃଷ୍ଟିରୁ ସମ୍ଭବ, ତାହା ବାସ୍ତବ କ୍ଷେତ୍ରରେ ରୂପାୟିତ ହେବାକୁ ବେଶି ସମୟ ନିଏ ନାହିଁ। ଶତାବ୍ଦୀ ଶେଷ ବେଳକୁ ତାହା ଫଳପ୍ରଦ ହେବ ବୋଲି ଆଶା। ଏଥିପାଇଁ ଡ୍ୟୁଟେରିୟମରୁ ହିଲିୟମ୍ ସଂଶ୍ଳେଷଣ କରିବାକୁ ହେବ। ଡ୍ୟୁଟେରିୟମ୍ ଉଦ୍‌ଯାନର ଆଇସୋଟୋପ। ଜଳରୁ ତାହା ମିଳିବ। ସାଢ଼େ ଛ କିଲୋଗ୍ରାମ ଜଳରୁ ଏକଗ୍ରାମ ଡ୍ୟୁଟେରିୟମ୍ ମିଳିବ। ଏହାଦ୍ୱାରା ଏକ ଲିଟର ସାଧାରଣ ଜଳରୁ ଯେତିକି ତାପ ମିଳିବ, ତାହା ୧୬୦ କିଲୋ କୋଇଲା ଜଳିଲେ ମିଳିପାରିବ। ବର୍ଷକୁ ସାରା ପୃଥିବୀରେ ଯେତିକି କୋଇଲା ଖର୍ଚ୍ଚ ହେଉଛି, ସେହି ଚାହିଦା ମେଣ୍ଟାଇବାକୁ ହେଲେ ଆମର କେତେ ସାଧାରଣ ଜଳ ଦରକାର ଜାଣନ୍ତି? ତାକୁ ଏକାଠି ଜମାଇଲେ ହେବ ତାହାର ଦୈର୍ଘ୍ୟ ୨୩୦ ମିଟର, ପ୍ରସ୍ଥ ୨୩୦ ମିଟର ଓ ଉଚ୍ଚତା ୨୩୦ ମିଟର। ଏହା ଯେକୌଣସି ଗଡ଼ିଆ ପୋଖରୀର ଜଳ ସଙ୍ଗେ ସମାନ। ଆମ ସାତ ସମୁଦ୍ରରେ ଅକାତ ଜଳ ଭରି ରହିଛି। ଯୁଗ ଯୁଗ ପାଇଁ ଆମକୁ ଚିନ୍ତା କରିବାକୁ ପଡ଼ିବ ନାହିଁ। କିନ୍ତୁ ଶକ୍ତି ଉତ୍ପାଦନ ବେଳେ ସତର୍କ ନ ହେଲେ ଅଧିକ ପ୍ରତିକ୍ରିୟା ଫଳରେ ଯେଉଁ ତାପ ନିର୍ଗତ ହେବ, ସେଥିରେ ପୃଥିବୀ ପୃଷ୍ଠର ଜଳବାୟୁ ବଦଳି ଯିବ ଓ ନୂଆ ପ୍ରକାର ବିପଦ ଦେଖା ଦେବ। ସେଥିପାଇଁ ନିରାପତ୍ତାର ସୀମା ଭିତରେ ଶକ୍ତି ଉତ୍ପାଦନ କଲେ ମଧ୍ୟ ଏବେ ମିଳୁଥିବା କାଠ, କୋଇଲା, ତେଲ ଓ ଗ୍ୟାସରୁ ଯେତେ ଶକ୍ତି ମିଳୁଛି, ତାହାର ଶହେ ଗୁଣ ମିଳିବ।

ଅନେକଙ୍କର ଆଶଙ୍କା, ପରମାଣୁ ଶକ୍ତି ବ୍ୟବହାର କଲେ ତେଜଷ୍କ୍ରିୟ ଭସ୍ମରେ ଜଳସ୍ଥଳ ବାୟୁ ଦୂଷିତ ହୋଇଯିବ । ଆଣବିକ ବିଜ୍ଞାନୀଙ୍କ ମତରେ, ଏହା ବୃଥା ଆଶଙ୍କା । ବର୍ତ୍ତମାନ ପୃଥିବୀରେ ପ୍ରାୟ ୩୦୦ ରିଆକ୍ଟର ଚାଲୁଛି; କିନ୍ତୁ ଦୁର୍ଘଟଣା ମାତ୍ରା ଅତି କମ୍ । ଦେଖାଯାଇଛି ପ୍ରକୃତିରେ ଥିବା ଆଣବିକ ପଦାର୍ଥରୁ ଆମେ ଶତକଡ଼ା ୬୮ ଭାଗ ବିକିରଣ ପାଇଲାବେଳେ ମେଡ଼ିକାଲରୁ ପାଉ ଶତକଡ଼ା ୩୧ ଭାଗ, ବୋମା ବିସ୍ଫୋରଣରୁ ୦.୬ଭାଗ ଓ ପରମାଣୁ କେନ୍ଦ୍ରରୁ ମାତ୍ର ୦.୧୫ ଭାଗ । ଏଥିରେ ଡରିବାର କ'ଣ ଅଛି ?

ବର୍ତ୍ତମାନ ଅନ୍ୟ ଏକ ଅପରିମିତ ଶକ୍ତି ଭଣ୍ଡାର କଥା ଚିନ୍ତା କରିବା । ସୂର୍ଯ୍ୟ ନିଜେ ସେଇ ଶକ୍ତିର ଭଣ୍ଡାର । ସେ ବିଶ୍ୱକୁ ଯେତେ ଶକ୍ତି ବାଣ୍ଟିଦିଏ, ତାହାକୁ କୋଟିଏ ଟଙ୍କା ମନେକଲେ ପୃଥିବୀ ପାଏ ମାତ୍ର ୪ ପଇସାର । ପୃଥିବୀ ଆଡ଼କୁ ଆସୁଥିବା ଶକ୍ତିର ଶତକଡ଼ା ୭୪ ଭାଗ ବାୟୁମଣ୍ଡଳ ଶୋଷିନିଏ । ବାକି ଯେଉଁ ଅଂଶ ପୃଥିବୀରେ ପଡ଼େ, ତାହାର ଶତକଡ଼ା ୧୦ ଭାଗ ଯଦି ଆମେ ବିନିଯୋଗ କରିବା, ତାହାହେଲେ ତାହା ଆମ ଶକ୍ତି ଚାହିଦାର ୧୦୦୦ଗୁଣ ହେବ । ସୌର ଶକ୍ତିରୁ ବିଦ୍ୟୁତ୍ ଜନ୍ମାଇବାକୁ ହେଲେ ଆମକୁ ଅନେକ ସୁଗ୍ରାହୀ, ଦକ୍ଷ ପଦାର୍ଥମାନ ଉଦ୍ଭାବନ କରିବାକୁ ହେବ । ବର୍ତ୍ତମାନ ମିଳୁଥିବା ଆଲୋକ ବୈଦ୍ୟୁତିକ ପଦାର୍ଥର ଦକ୍ଷତା ଶତକଡ଼ା ୧୦ ଭାଗ ଓ ତାପ ବୈଦ୍ୟୁତିକ ପଦାର୍ଥର ମାତ୍ରା ୭ ଭାଗ । ସୌର ଶକ୍ତିକୁ ସାଇତି ରଖିବା ଏବେ ବି ସମସ୍ୟା ହୋଇ ରହିଛି । ତଥାପି ଜଳ ଗରମ କରି ବାଷ୍ପୀୟ ଇଞ୍ଜିନ ଚଳାଇବା, ପମ୍ପ ଚଳାଇ ପାନୀୟ ଜଳ ଯୋଗାଇବା, ଜଳସେଚନ କରିବା, ଘର ଥଣ୍ଡା ରଖିବା, ରୋଷେଇ କରିବା ଆଦି ନାନା କାର୍ଯ୍ୟ ହେଲାଣି । ସୌର ଶକ୍ତିର ସୁବିଧା ହେଲା—ପରିବହନ ଖର୍ଚ୍ଚ ନାହିଁ, ଦୂର ଦୁରାନ୍ତରେ ଗାଁ ଗହଳରେ, ବିଶେଷତଃ ଅଗମ୍ୟ ଅଞ୍ଚଳରେ ବିକେନ୍ଦ୍ରୀକର ବ୍ୟବସ୍ଥା ଦ୍ୱାରା ଶକ୍ତି ଉତ୍ପାଦନ କରିହେବ । ପରିବେଶ ଦୂଷିତ ହେବାର ଆଶଙ୍କା ନାହିଁ । କୌଣସି ଜାଳେଣିର ଆବଶ୍ୟକତା ନାହିଁ । ସୂର୍ଯ୍ୟ ଥିବା ପର୍ଯ୍ୟନ୍ତ ଆମେ ରହିବୁ, ସୌର ଶକ୍ତି ରହିବ ଓ ଆମର ଶକ୍ତି ଚାହିଦା ମେଣ୍ଟିବ । ପ୍ରାରମ୍ଭିକ ଖର୍ଚ୍ଚ ଅଧିକ ହେଲେ ମଧ୍ୟ ମରାମତି ଖର୍ଚ୍ଚ ପ୍ରାୟ ନାହିଁ । ଉପକରଣରେ କିଛି ଘୂରୁ ନ ଥିବାରୁ ଘୋର ହୋଇଯିବା ବା ଭାଙ୍ଗିରୁଜି ଯିବାର ଆଶଙ୍କା ନାହିଁ ।

ଭୂଗର୍ଭସ୍ଥ ଅସରନ୍ତ ଭଣ୍ଡାର ହେଲା—ଭୂତାପ । ଭୂପୃଷ୍ଠରୁ ୩୦ କିଲୋ-ମିଟର ଫୁଟାଇ, ପଥର ତରଳାଇ ପୃଥିବୀର ଅଭ୍ୟନ୍ତର ତାପକୁ ଭୂପୃଷ୍ଠକୁ ଆଣିବାକୁ ହେବ । ଭାରତରେ ଏଥିପାଇଁ ଅନେକ ସମସ୍ୟା ଅଛି । ଏଥିପାଇଁ ଉପଯୁକ୍ତ ସ୍ଥାନ କମ୍ । ପୁଣି ପରିବହନ ଓ ବଣ୍ଟନ ସମସ୍ୟା ଅଛି ।

ଏହି ଶକ୍ତି ଅସରନ୍ତି ଭଣ୍ଡାରକୁ ଗୁରୁତ୍ୱଦେଲେ ଦେଶରେ ୭୦,୦୦୦ ଗୋବର ଗ୍ୟାସ ପ୍ଲାଣ୍ଟ କାର୍ଯ୍ୟକାରୀ ହେଲାଣି । ସମୁଦ୍ର ତରଙ୍ଗ, ଉଷ୍ମ ସମୁଦ୍ର ସ୍ରୋତ ଓ ପବନ ଶକ୍ତିରେ କଳକାରଖାନା ଚଳାଇବାର ବ୍ୟବସ୍ଥା ହେଉଛି । ଶସ୍ୟକ୍ଷେତର ଫିଙ୍ଗା ଫୋପଡ଼ାରୁ ଆଲକହଲ ଆମଦାନୀ କରି କେତେକାଂଶରେ ପେଟ୍ରୋଲ ଖର୍ଚ୍ଚ ମେଣ୍ଟାଇ ହେବ । ତରଳ ଉଦ୍‌ଜାନ ନେଇ ସୁପର ଯୋଗାଙ୍କ ଜେଟ ବିମାନ ହଜାର ହଜାର କିଲୋମିଟର ଅଳ୍ପ କେତେ ଘଣ୍ଟାରେ ପାର ହୋଇଯିବ ।

ସଙ୍କଟ ଘନେଇ ଆସୁଛି ସତ, କିନ୍ତୁ ବିଜ୍ଞାନ ବଳରେ ଆମେ ତା'ର ସମ୍ମୁଖୀନ ହେବାକୁ ପ୍ରସ୍ତୁତ । ଆଜିଠାରୁ ସମାଧାନକରି ବସିଲେ ଆଗାମୀ କାଲିର ସମସ୍ୟା ଆଉ ସମସ୍ୟା ହୋଇ ରହିବ ନାହିଁ ।



# ଜିଙ୍ଗା ଫୋପଡ଼ାରୁ ଫାଇଦା

## ପରିବେଶର ଗ୍ରାସ

ଆବର୍ଜନା ସମ୍ପଦ ନୁହେଁ । ଯାହା ସମ୍ପଦ ନୁହେଁ, ଯାହାଠାରୁ କାମ ସରିଗଲା, ଯାହା ଅଦରକାରୀ ହୋଇପଡ଼ିଲା, ତାକୁଇ ଆମେ ବର୍ଜନ କରୁ, ଜିଙ୍ଗୁ ଓ ଫୋପାଡ଼ୁ; ତାହା ହୁଏ ଆବର୍ଜନା । କୁଢ଼ କୁଢ଼ ହୋଇ ଜମି ଶେଷରେ ହୁଏ ଅଳିଆଗଦା । ସେଠି ତାହା ପଚେ, ସଢ଼େ ଓ ଗନ୍ଧାଏ । ଫଳରେ ବାୟୁମଣ୍ଡଳ ବିଷାକ୍ତ ହୁଏ, ପଣ ପଣ ପୋକମାଛି ଜନ୍ମାନ୍ତି । ଜୀବାଣୁଙ୍କ ବଂଶ ବିସ୍ତାର ପାଇଁ ସୁଯୋଗ ଆସେ । ରୋଗ ବ୍ୟାପେ ଓ ମହାମାରୀ ରୂପ ନିଏ । ଯେଉଁମାନେ ପରିବେଶକୁ ବିକୃତ ଓ କଦାକାର କରନ୍ତି; ସର୍ବସାଧାରଣ ରାସ୍ତାରେ ମଳମୂତ୍ର ତ୍ୟାଗ କରନ୍ତି, ନର୍ଦ୍ଦମାନାଳରେ ମଇଳାଳୁଗା ଧୁଅନ୍ତି ବା ପଶୁପକ୍ଷୀ ଶବ ଭସାଇ ଦିଅନ୍ତି, ଅନ୍ୟ ଭାଇଭଉଣୀଙ୍କ ସ୍ୱାସ୍ଥ୍ୟ କଥା ଚିନ୍ତା କରନ୍ତି ନାହିଁ, "ଆପେ ରହିଲେ ବାପର ନାଁ ବୋଲି" ଭଜନ କୀର୍ତ୍ତନ କରନ୍ତି, ପରିବେଶର ବିଷ ପରିପୋଷଣରେ ସେଇମାନଙ୍କୁ ଗ୍ରାସ କରେ ।

## ପତିତପାବନୀ ଅଜି ସୁରଭନା

ଆମେ ଯେତେବେଳେ ଅଳିଆଗଦା ଜମାଇ ଦେଉ, ଆବର୍ଜନା ଆଖିବୁଜି ଜିଙ୍ଗୁ, ସେତେବେଳେ ବର୍ଜ୍ୟ ବସ୍ତୁ ବର୍ଜନ କରି କ୍ଷଣକ ପାଇଁ ନିଶ୍ଚିନ୍ତ ହେଉ । ନିରପେକ୍ଷ ପ୍ରକୃତି ତାକୁ ପଚାଇ ସଢ଼ାଇ କ୍ଷୟ କରିବାକୁ ଚେଷ୍ଟା କରେ । ପରିବେଶକୁ ଦୂଷିତ ବା ବିଷାକ୍ତ ହେବାକୁ ଦିଏ ନାହିଁ । ଫଳରେ ବିଷାକ୍ତତା ସୁଧାର ହୋଇ ପାରୁଥିବା ସୀମା ମଧ୍ୟରେ ରହେ । କିନ୍ତୁ କୁଢ କୁଢ଼ ମଇଳା ନାଳକୂଳେ ଜମାଇଲେ, ସବୁ କାରଖାନାର ମଇଳା ପାଣି ବା ବିଷାକ୍ତ ରସାୟନିକ ଧୂଆଁ

ଧୋଇ କରି ନଈକୁ ଛାଡ଼ିଲେ ପ୍ରକୃତି ଏକା କ'ଣ କରିପାରିବ ? ଭାରତର ସବୁ ପତିତ ଯଦି ଆସି ଗଙ୍ଗାସ୍ନାନ କରିବେ, ସବୁ ମୁକ୍ତିକାମୀ ଯଦି ଗଙ୍ଗାକୂଳେ ଦେହତ୍ୟାଗ କରିବେ, ସବୁ ପାପୀ ସନ୍ତାପୀଙ୍କ ଶବାଭସ୍ମ ଗଙ୍ଗାଜଳରେ ବିସର୍ଜନ କରାଯିବ, ଦେଉଳର ପାଦୁକ ପରି ହଜାର ହଜାର କଳକାରଖାନା ଓ ପାଇଖାନାର ଧୁଆଧୋଇ ଓ ମଇଳା ପାଣି ଗଙ୍ଗାସ୍ରୋତରେ ମିଶିଯିବ, ତେବେ ଏକମାତ୍ର ପତିତପାବନୀ ଗଙ୍ଗା ଅପବିତ୍ରା ଓ ଦୂଷିତା ନ ହୋଇ ରହିବ କିପରି ? ମା' ଜାହ୍ନବୀ ଆଜି ବିଷାକ୍ତତା ସୀମା ଲଙ୍ଘି ସୂଚନା ପାଇଟିଲେଣି । ଦିନେ ଆମେ ଶଯ୍ୟାଶାୟୀ ମୁମୂର୍ଷୁଙ୍କୁ ଗଙ୍ଗାଜଳ ପାନ କରାଇ ସ୍ୱର୍ଗଧାମକୁ ପଠାଇବାର ସ୍ୱପ୍ନ ଦେଖୁଥିଲୁ । ଆଜି ସ୍ୱପ୍ନ ବାସ୍ତବ ରୂପ ନେଇଛି । କେବଳ ମୁମୂର୍ଷୁ କାହିଁକି, ଯେକୌଣସି ସ୍ୱାସ୍ଥ୍ୟବାନ ଯୁବକ ବିଷମିଶ୍ରିତ ଗଙ୍ଗାଜଳ ପାନ କରି ସ୍ୱର୍ଗାରୋହଣ କରିପାରିବ !

## ଅଳିଆଗଦାରେ ନଜର

ଯେଉଁ ଜନସଂଖ୍ୟା ଆବର୍ଜନା ବଢ଼ାଏ, ଆବର୍ଜନା ଜମି ଶେଷରେ ସେଇ ଜନସଂଖ୍ୟାକୁ ହ୍ରାସ କରେ ଏହା ଏକ ସ୍ୱୟଂକ୍ରିୟ ପଦ୍ଧତି । ଏହି ସ୍ୱୟଂକ୍ରିୟ ପଦ୍ଧତିରେ ଭାରସାମ୍ୟ ରକ୍ଷା କରାଯାଏ ବା ସନ୍ତୁଳନ ହୋଇ-ଥାଏ । କିନ୍ତୁ ଏହି ପ୍ରକ୍ରିୟାରେ ଦୋଷୀ ଓ ନିର୍ଦ୍ଦୋଷର ବାଛବିଚାର ହୋଇପାରେ ନାହିଁ । ଫଳରେ ମାନବ ସମାଜ ବିଭିନ୍ନ ପ୍ରକାର ରୋଗ ଓ ଯନ୍ତ୍ରଣାର ଶିକାର ହୋଇ ବିକୃତ ବା ବିକଳାଙ୍ଗ ହୁଏ । ସେତେବେଳକୁ ଲେଡ଼ିଗୁଡ଼ି କାନ୍ଦୁଣୀକୁ ବୋହିଯାଇଥାଏ । ତେଣୁ ନିର୍ମଳ ପରିବେଶ ଯାହାର ଦରକାର, ସେ ପରିବେଶ ବିଶୋଧନରେ ପ୍ରକୃତି ସଙ୍ଗେ ସମତାଳରେ ହାତ ମିଳାଇବା ପାଇଁ ବେଳହୁଁ ସାବଧାନ ହେବା ଉଚିତ ।

ସଭ୍ୟତା ବଢ଼ି ବଢ଼ି ଗଲେ ଆମ କାରଖାନା ସଂଖ୍ୟା ବଢ଼ିବ । ଶିଳ୍ପ ପ୍ରସାରିତ ହେବ । ହଜାରେ ଦିନରେ ହଜାରେ ନୁହେଁ, ହଜାର ହଜାର ଶିଳ୍ପ ମୁଣ୍ଡ ଟେକିବ । କେତେ ରକମରେ ଓ କେତେ ପ୍ରକାରେ ତାହା ଆମ ଆବଶ୍ୟକତା ପୂରଣ କରିବ । ବିଭିନ୍ନ ପ୍ରକାର କାରଖାନାରୁ ନୂଆ ନୂଆ ଅପଦ୍ରବ୍ୟ ବା ଆବର୍ଜନା ଜାତ ହେବ । ତାହା ଜଳ, ସ୍ଥଳ,

ବାୟୁମଣ୍ଡଳ ସର୍ବତ୍ର ବ୍ୟାପିଯିବ । ଆମ କୃଷିକ୍ଷେତ୍ର, ସହର ବଜାର, ବଣଜଙ୍ଗଲ, ଡାକ୍ତରଖାନା—ସବୁଥିରୁ କେତେପ୍ରକାର ଆବର୍ଜନା ଜମା ହୋଇପଡ଼ିବ । ସେଗୁଡ଼ିକ ବିଶୋଧନ କରାଯିବ, ବିଶୋଧିତ ହୋଇ ପୁନରାୟ ଆମ ସୁବିଧା ମେଣ୍ଟାଇବ ଓ ଯଥାର୍ଥରେ ସମ୍ପଦ ହେବ । ଏସବୁ ହେଲା ବାହାର ଆବର୍ଜନା କଥା । ଆମେ ଘରର ଆବର୍ଜନା କଥା ଚିନ୍ତା କରିଛେ କି ? ପରର ଅଳିଆ ଗଦା ଅଣ୍ଡାଳିବା ଆଗରୁ ଆମ ନିଜ ଘର ଅଳିଆଗଦା ଆଡ଼େ ଥରେ ନଜର ପକାନ୍ତୁ ।

## ଭାତ ହାଣ୍ଡିରୁ ଗୋଟିଏ

ଘର କେତେ ପ୍ରକାରର । ସ୍ଥାନ କାଳ ପାତ୍ର ଅନୁସାରେ ତାହା ଭିନ୍ନ ହୋଇଥାଏ । ତାହା ଏକ ସହରି ବା ମଫସଲ ଘର ହୋଇପାରେ; ତାହା ପୁଣି ଜଣେ ବ୍ୟବସାୟୀ କୃଷକ, ଶିକ୍ଷକ, ଡାକ୍ତର, ଇଞ୍ଜିନିୟର ବା ଶ୍ରମିକର ହୋଇପାରେ । ସେହି ଅନୁସାରେ ଘରର ଆବର୍ଜନା ଭିନ୍ନ ଭିନ୍ନ ହେବ । କିନ୍ତୁ ସବୁ ଘରର ଅଳିଆ ଘାଣ୍ଟିବା ଆମର ଲକ୍ଷ୍ୟ ନୁହେଁ । ଭାତହାଣ୍ଡିରୁ ଆମେ ଗୋଟିଏ ଚିପିବା । ସେଥିରୁ ଠଉରେଇ ହେବ ଅନ୍ୟମାନଙ୍କର ଅବସ୍ଥା କ'ଣ ? ଆସନ୍ତୁ ଗୋଟିଏ ସାଧାରଣ ପରିବାରର ଉଦାହରଣ ନେବା ଓ ସେ ପରିବାରରେ କିପରି ଫିଙ୍ଗା ଫୋପଡ଼ା ହୁଏ, ତାହା ବିଚାର କରିବା ।

## କାମରେ ଲାଗିପାରେ

ଏ ସମ୍ବନ୍ଧରେ ମୁଁ ପିଲାଦିନେ ପଢ଼ିଥିବା ଗପଟିଏ ମନେପଡ଼ୁଛି । ଗରିବ ପିଲାଟିଏ ଚାକିରିପାଇଁ ଦରଖାସ୍ତ ଦେଇଥିଲା । ତାକୁ ସାକ୍ଷାତକାର ପାଇଁ ଡକା ହୋଇଥିଲା । ତା'ର କ'ଣ ବିଶେଷ ଗୁଣ ଅଛି, ତାକୁ କାହିଁକି ଚାକିରି ଦିଆଯିବ, ଅନ୍ୟକୁ କାହିଁକି ଦିଆଯିବ ନାହିଁ, ଏହିପରି ଗୁଡ଼ିଏ ପ୍ରଶ୍ନ ତାକୁ ପଚରାଗଲା । ପିଲାଟି ବଡ଼ ସରଳ ଥିଲା । ଏଣୁତେଣୁ ବୁଲେଇ କିଛି କହି ପାରିଲା ନାହିଁ । ତା'ର ସେଇ ଏକମାତ୍ର ଉତ୍ତର—ସେ ଭାରି ଗରିବ ଓ ତା ପାଇଁ ଚାକିରି ନିହାତି ଦରକାର । ତାକୁ ଚାକିରି ଦିଆଗଲେ ସେ ମନପ୍ରାଣ ଲଗାଇ କାମ କରିବ । ସବୁ ଦରଖାସ୍ତକାରୀ ତ ଠିକ୍ ତାହାହିଁ

କହୁଥିଲେ । ତେଣୁ ସାକ୍ଷାତ୍‌କାରୀ ଏ ସାଧାରଣ ଉତ୍ତର ଉପରେ ଗୁରୁତ୍ୱ ଦେଲେ ନାହିଁ ।

ପିଲାଟି ନିରାଶ ହୋଇ ଫେରିଲା । ସେ ସଡ଼କ ଉପରକୁ ଚାଲିଗଲାଣି । ଝରକାବାଟେ ଦିଶୁଥାଏ । ସେ ନଇଁପଡ଼ି ରାସ୍ତାରୁ କ'ଣ ଉଠେଇ ନେଇ ପକେଟ୍‌ରେ ରଖିଲା । କ'ଣ ସେ ଗୋଟେଇ ନେଲା ? ଜାଣିବା ପାଇଁ କୌତୁହଳୀ ହୋଇ ସାକ୍ଷାତକାରୀ ତାକୁ ଡକାଇ ପଠେଇଲେ । କ'ଣ ପାଇଁ ପୁଣି ଡକା ହେଲା, ପିଲାଟି କିଛି ଠଉରେଇ ପାରୁନଥାଏ । ସାକ୍ଷାତକାରୀ ପଚାରିଲେ, "ରାସ୍ତାରୁ କ'ଣ ଉଠାଇ ପକେଟରେ ରଖିଲ ?" ଏ ପ୍ରଶ୍ନ ଶୁଣି ପିଲାଟି ଭାରି ଡରିଗଲା ଓ ଥରିଲା ଥରିଲା ଗଳାରେ କହିଲା, "ମହାଶୟ, ତାହା ଏକ ସାମାନ୍ୟ ଲୁହାକଣ୍ଟା । କାହା ଗୋଡ଼ରେ ଗଳି ଯାଇଥାନ୍ତା, କାହା ସାଇକଲ, ସ୍କୁଟର ବା ମଟରଗାଡ଼ିର ଚକ ଫୁଟି ଦୁର୍ଘଟଣା ଘଟି-ଥାନ୍ତା ।" "ତାକୁ ଦୂରକୁ ନ ଫିଙ୍ଗି ପକେଟରେ ରଖିଲ କାହିଁକି ?" ସାକ୍ଷାତକାରୀ ପଚାରିଲେ । ପିଲାଟି ଉତ୍ତର ଦେଲା—"ଲୁହା କଣ୍ଟାଟି କେତେବେଳେ କାମରେ ଲାଗି ପାରେ ।"

## ଯତ୍ନଶୀଳ ବାଳକ

ସାକ୍ଷାତ୍‌କାରୀଙ୍କ ଆଖି ଝଲସି ଉଠିଲା । ସେ ପିଲାଟି ଉପରୁ ନଜର ଫେରାଇ ତାଙ୍କ କାରଖାନା ଆଡ଼କୁ ଅନେଇଲେ । କେତେ ବଡ଼ ଏ କାରଖାନା, କେତେ ଶ୍ରେଷ୍ଠ ଏ ପିଲା । କାରଖାନା ଆହୁରି ବଡ଼ ହେବ । ଏଥିରୁ ଲୁହାକଣ୍ଟା ଅପେକ୍ଷା କେତେ କ'ଣ ମୂଲ୍ୟବାନ ଜିନିଷ ଦୂରକୁ ଫିଙ୍ଗା ହୋଇ ପଡ଼ିବ । କିଏ ତା'ର ରକ୍ଷଣାବେକ୍ଷଣ କରିବ ? ଏଇ ଶ୍ରେଷ୍ଠ ପିଲାଟି ମୁଣ୍ଡରେ ଯେଉଁ ବିରାଟ ବୁଦ୍ଧି ବିଚାର ଅଛି, ତାହାହିଁ ଏ କାରଖାନାର ଯତ୍ନ ନେଇପାରିବ ।

ତାକୁ ସେଇ ଚାକିରିଟି ମିଳିଲା । ଅନ୍ୟ ଯେଉଁମାନେ କାରଖାନାରେ କିପରି କାମ କରିବାକୁ ହୁଏ, ଅନ୍ୟର କାମ ତଦାରଖ କରାଯାଏ, ଉତ୍ପାଦନ ବଢ଼ାଯାଏ, କାରଖାନାର ସମ୍ପତ୍ତି ରକ୍ଷଣାବେକ୍ଷଣ କରାଯାଏ—ସେ ସମ୍ବନ୍ଧରେ

ମୂଲ୍ୟବାନ ତଥ୍ୟମାନ ଉଦ୍ଧାର କରିଥିଲେ, ସେମାନେ ନିରାଶ ହୋଇ ଫେରିଗଲେ । ସେଇ ଯତ୍ନଶୀଳ ବାଳକଟି ଉନ୍ନତି କରି କରି ଶେଷରେ କାରଖାନାର ପରିଚାଳନା ଭାର ଗ୍ରହଣ କଲା ।

## ଚଟି ମେଳରେ ଶାବଳ

ଆମେ ସମ୍ପଦ ପାଇଁ ବାହାରର ଅଳିଆ ଗଦା ଅଣ୍ଡାଳୁ, ନିଜ ଘରଆଡ଼େ ନଜର ଦେଉନା । ଘରେ ଚୂଚୁନ୍ଦ୍ରା, ଅସରପା, ମୂଷା, ଝିଟିପିଟି ଅଡ୍ଡା କଲେଣି । ଅଗଣା ଅସୁନ୍ଦର । ଅଗଣାରେ କେତେ କ'ଣ ପଡ଼ିଛି ଗଣି ହେଉନି । ବାଡ଼ରେ ବାଡ଼ ଧରି ଚାଲିବା ମଧ୍ୟ ମୁସ୍କିଲ । ଭଙ୍ଗାକାଚ, ମୁନିଆ କଣ୍ଟା, ଫୁଟାଡବା, ଖଣ୍ଡଇଟା, ପଥରଗଦା, ଛିଣ୍ଡାକନା, ଫଟାବାଲ୍‌ଟି, ପ୍ଲାଷ୍ଟିକଖୋଳ—କ'ଣ ନ ପଡ଼ିଛି ? ପାଦ ପକାଇଲେ ଉଠାଇ ହେବନି, ଉଠାଇଲେ ପକାଇ ହେବନି । କେଉଁଠି ମୂଷାଗାଡ଼ରେ ପାଦ ଦବିଯିବତ, ଭଙ୍ଗାକାଚରେ ଚିରି ହୋଇଯିବ । ମାଛି ଭଣ ଭଣ, ମଶା ପଣ ପଣ ।

ଘର ଭିତରଟା ତା'ଠାରୁ ଅଧିକ । ଶୁଆ ଘର ବୈଠକଖାନା, ରୋଷେଇ-ଘର ସବୁ ଏକାକାର । ଧାରୁଆ ପନିକି ଅଇଁଠା ବାସନ କୁସନ ପାଖରେ ଅନେଇଛନ୍ତି । କଲମ ପେନ୍‌ସିଲଠାରୁ ମାତ୍ର କେତେଫୁଟ ବ୍ୟବଧାନରେ ଦା' ହାତୁଡ଼ି ଅବସ୍ଥାନ କରୁଛନ୍ତି । ଜୋତା ଓ ଚଟି ମେଳରେ ଶାବଳଟି ଶୋଇ ଅଳସ ଭାଙ୍ଗୁଛି । ଝାଡୁଟି ଦାନରେ କେଉଁଠି ମୁହଁ ଲୁଚାଇଛି; ଠିକ୍ ଝୁଲବଣି ମାଡ଼ିଲା ବେଳକୁ ଖୋଜା ପଡ଼ିବ । ପେଚ ଆଣ୍ଠିଲା ବେଳକୁ ଘରେ ପେଚକଷ୍ ଖୋଜିବେ ପାଞ୍ଚ ଜଣ । ଘରେ ସକାଳୁ ସଞ୍ଜ ଯାଏ ଚାବିନେଣ୍ଟା ନଅ ଥର ହଜିବ । ଯେଉଁଠି ପାଣି ପିଆଗଲା କାଚ ଗିଲାସ ସେଇଠି ଅପେକ୍ଷା କଲା, ଅନ୍ୟ କିଏ ପାଣି ପିଇବା ପର୍ଯ୍ୟନ୍ତ । ବାବୁମାନେ ଚା' ପିଇ ଚାଲିଗଲେ, କପ୍ ଥାଳିଆ ପଡ଼ି ରହିଲା । ପୁଣି କିଏ ଚା ପିଇବାକୁ ଆସିଲେ ସେଗୁଡ଼ିକ ଧୁଆ ହେବ । ଗୋଡ଼ ବାଜି ଭାଙ୍ଗିଗଲେ ଚାଲିଲାବାଲାର ଦୋଷ । ଘର ତ ଚାଲିବାଟ ନୁହେଁ । ସେଠି ଓଟପରି ଉପରକୁ ଅନାଇ ଚାଲିଲେ ଚଳିବ କିପରି ? ଠିକ୍ ଘୁଷୁରି ପରି ତଳକୁ ମୁହଁ ପୋତି ଚାଲିବାକୁ ହେବ । ଘରଣୀ ତାଗିଦ କରି ଦିଅନ୍ତି ।

## ଘର ଓଲେଇବ କିଏ

ରାସ୍ତାରୁ କଣ୍ଟା ସିନା ଯତ୍ନଶୀଳ ବାଳକ ଉଠାଇ ନେବେ, ଧାର୍ମିକମାନେ ରାସ୍ତା ସଫେଇ କରି ଧର୍ମ ଅର୍ଜନ କରିବେ; ଘର ଓଲେଇବ କିଏ ? ମୁକରର ହୋଇଥିବା ଚାକର ମକର ବା ଠିକା ଚାକରାଣୀ ଚଞ୍ଚଳା । ଅନ୍ୟ ସମସ୍ତେ ସମବେତ ହୋଇ ସମନ୍ୱିତ ଭାବେ ଫିଙ୍ଗା ଫୋପଡ଼ା କରିବେ ।

ତେଣୁ ଫ୍ୟୁଜ ଲଗାଇଲା ବେଳକୁ ତାର ଖଣ୍ଡେ ମିଳିବ ନାହିଁ । ସ୍କ୍ରୁ ତାକୁ ସେ ସ୍ତ୍ରୀକୁ ପଚାରୁଥିବେ । ସୁଇଚ୍ ଅନ୍ କଲା ବେଳକୁ ବଲବଟିଏ ନ ଥିବ । ସବୁଠାରୁ ମଜା ଖବର ଆଜିକାଲି ଖବରକାଗଜ କେଉଁଠି କବାଟ କଣରେ ବା ଆଲମାରି ସନ୍ଧରେ ମୁହଁ ଲୁଚାଇଥିବ । ଉଡ଼ିଗଲାବେଳେ କେଇ ମିନିଟ୍‌ଟିଏ ସମୟ ଦେଇ ଗୋଟେଇବେ ନାହିଁ । ଅଥଚ ପଢ଼ିଲା ବେଳକୁ ଅଧଘଣ୍ଟା ଖୋଜିବେ । ତାଙ୍କ ଘରର ଏ ଅବ୍ୟବସ୍ଥା ପାଇଁ, ସେମାନଙ୍କ ମତରେ, ଏକମାତ୍ର କାରଣ ହେଲା—ତାଙ୍କ ମକର ବା ଚଞ୍ଚଳା ଯତ୍ନ ଶୀଳତା କ'ଣ ଜାଣନ୍ତି ନାହିଁ । ଦାସ ବାବୁଙ୍କ ଚାକର ପରି ଚାକରଟିଏ ମିଳିଲେ ତାଙ୍କ ଘର ହସି ଉଠନ୍ତା ।

## ଆବର୍ଜନା ସମ୍ପଦ

ଏଭଳି ଏକ ପରିବାରରେ ସମ୍ପଦ ଆବର୍ଜନା ହୁଏ । ସେଠି କ'ଣ ଆବର୍ଜନାରୁ ସମ୍ପଦ ପାଇ ହେବ ? ହେବ । ଏଥିପାଇଁ ମାନସିକ ସଚେତନତା ଓ ଦୃଢ଼ତା ଦରକାର । ସମସ୍ତେ ଏକାଠି ମନ ମିଳାଇବେ; କେତେକ କଥା ଅଭ୍ୟାସରେ ପକାଇବେ । ଘରର ଘରଣୀ ଗୃହଲକ୍ଷ୍ମୀ ହୋଇ ଯଦି ଚାକରାଣୀ ଚଞ୍ଚଳା ହାତକୁ ଚାହିଁ ରହିବେ, ଘରର ମାଲିକ ଯଦି ମକର ସହିତ ମନ୍ତ୍ରଣା କରିବେ, କପାଳରେ କେବଳ କର ମାରିବା ସାର ହେବ । ପିଲାଏ ବାପ ମାଆଙ୍କ ଠାରୁ ଶିଖିବେ କ'ଣ ? କ'ଣ ରଖିବାକୁ ହେବ, କେଉଁଠି ରଖିବାକୁ ହେବ ଯେପରି ଶିଖିବାର କଥା, ଭଙ୍ଗାଭୁଷା ଅଦରକାରି ଜିନିଷ କପରି ଫିଙ୍ଗିବାକୁ ହେବ, ତାହା ମଧ୍ୟ ଶିଖିବାର କଥା । ତାହାହେଲେ ସମ୍ପଦ ଆବର୍ଜନା ନ ହୋଇ ଆବର୍ଜନା ସମ୍ପଦ ହେବ ।

## ସଜାସଜି ଏକ କଳା

ଯେଉଁମାନଙ୍କର ମାସ ବଖରାଏ ଘର ଜମ୍ମା ଗଛତଳେ ବସା, ଯେଉଁମାନେ ଆଜ ଏଠି ତ କାଲି ସେଠି, ବାରଦ୍ୱାର ଶୁଣ୍ଠି ପିଣ୍ଡା ହେଉଛନ୍ତି, ସେମାନଙ୍କ କଥା ସ୍ୱତନ୍ତ୍ର । ଯେଉଁମାନଙ୍କର ଘର ଅଛି, ସେମାନଙ୍କ କଥା କୁହାଯାଉଛି । ଘରେ ସଜାସଜ କରି ରଖିବା ଏକ କଳା । ଏଥିରେ ଗବେଷଣା ନିବନ୍ଧ ଲେଖି ଡକ୍ଟର ଉପାଧି ମିଳିଲାଣି । କିନ୍ତୁ ସେସବୁ ଅତି ଗମ୍ଭୀରର ବିଷ । ସାଧାରଣ ଭାବେ କପଡ଼ ସଜେଇ ରଖିବାକୁ ହେବ, ଉପକରଣ ଗୁଡ଼ିକର ସ୍ଥାୟିତ୍ୱ ବଢ଼ିବ, ଏହା ଗୁରୁଜନଙ୍କଠାରୁ, ପଡ଼ିଶା ଘରୁ ଓ ବହିପତ୍ର ପଢ଼ାପଢ଼ି କଲେ ଜମ୍ମା ଟିକିଏ ଚିନ୍ତା କଲେ ଜାଣି ହୁଏ । ଏଥିପାଇଁ ଅଳ୍ପ କେତେ ମିନିଟ୍ ମୁଣ୍ଡ ଖେଳେଇଲେ ସମସ୍ତ ପାଣିରେ ପଡ଼ିବ ନାହିଁ । ଆଜକାଲି ଦୁନିଆରେ ଦରଚ ଯାହା ଦାଉ, ଭଲ ଜିନିଷ ଯେମିତି ଭେଜାଲ ହେଲାଣି, ନେତାଏ ଯେପରି ନକଲି ପାଲଟିଲେଣି, ସାତଅରେ ପଚାରିଲେ ବି ସତକଥା ବାହାରୁନି, ଦେଉଳକୁ ମୁଖଶାଳା ବଳିଲା ପରି ଦରମାକୁ ଦାମ୍ ଟପିଲାଣି, ସେଥିରେ ଯାହା ଭାଙ୍ଗିଯିବ, ଚିରିଯିବ ବା ହଜିଯିବ ତାକୁ ନୂଆ କରିବା କାଠିକର ପାଠ । ଯେଉଁଠି ଯେଉଁ ଜିନିଷ ରଖିଲେ ଘର ସୁନ୍ଦର ଦିଶିବ ବା ସହଜରେ ଖୋଜି ପାଇ ହେବ, ତାକୁ ସେଇ ସ୍ଥାନରେ ବରାବର ରଖିବାକୁ ହେବ । ତାହାହେଲେ ତାକୁ ସହଜରେ ଖୋଜି ପାଇ ହେବ । ଏଠି ସେଠି ଫିଙ୍ଗିଲେ ଘର ସାରା ଖୋଜିବାକୁ ହେବ, ସଜଡ଼ା ଜିନିଧ ପୁଣି ଅସଜଡ଼ା ହେବ, ବହୁ ସମୟ ନଷ୍ଟ ହେବ ଓ ମାନସିକ ଅଶାନ୍ତି ବଢ଼ିବ । ବେଳେବେଳେ ଆମେ ପରେ ରଖିବା କହି ଫିଙ୍ଗି ଅନ୍ୟକାମରେ ଚାଲିଯାଉ ବା ଅନ୍ୟକୁ ରଖିବାକୁ ବରାଦ କରି ଅନ୍ୟତ୍ର ଚାଲିଯାଉ । ଏପରି ଅଭ୍ୟାସ ଯଥାସାଧ୍ୟ ବଦଳାଇବାକୁ ହେବ ।

## ଆଲମାରିକା ବାକ୍ସ

ସେହିପରି କେତୋଟି ଆଲମାରିକା ବାକ୍ସ କରି ଯାହା ଭାଙ୍ଗିଗଲା, ଫାଟିଗଲା, ଫୁଟିଗଲା, ଚିରିଗଲା, ଅକାମି ହୋଇଗଲା ସେଗୁଡ଼ିକୁ ସେଥିରେ

ରଖିବାକୁ ହେବ । ଖାଲି ବୋତଲ, ଭଙ୍ଗା କାଚ ଗିଲାସ, ପୁରୁଣା ଡବା ଗୋଟିଏ ଜାଗାରେ ଜମାଇ ରଖାଯାଇ ପାରେ । ସେପରି ନ କରି ସେଗୁଡ଼ିକୁ ସର୍ବସାଧାରଣ ରାସ୍ତାକୁ କିମ୍ବା ପଡ଼ିଶା ବାଡ଼ିକୁ ଫିଙ୍ଗିଲେ ତାହା କେବଳ ଅଭଦ୍ରାମି ନୁହେଁ, ଅପରାଧ ମଧ୍ୟ । ଖାଲି ବୋତଲ ଅନ୍ୟର ଦରକାରରେ ଆସିପାରେ । ଭଙ୍ଗା କାଚ ପାଚେରି କାନ୍ଥରେ ଖଞ୍ଜିଲେ ପ୍ରତିବନ୍ଧକ ହୋଇପାରେ । ପୁରୁଣା ଡବାଗୁଡ଼ିକର ମଧ୍ୟ ମୂଲ୍ୟ ଅଛି । ପେଟକଣା, ଭଙ୍ଗା ବ୍ରସ, ଦନ୍ତମଞ୍ଜନ ଖୋଳ, ଫଟା ପ୍ଲାଷ୍ଟିକ ପାତ୍ରର ମଧ୍ୟ ଚାହିଦା ଅଛି । ପରିବା ଚୋପା ଏଣେତେଣେ ନ ଫିଙ୍ଗି ଖତ କରାଯାଇ ପାରେ । ଗୋ' ଖତଦାରର ମଧ୍ୟ ଚାହିଦା ଅଛି । ପେଜ ତୋରାଣି ଏଣେ ତେଣେ ନ ଢାଳି ବୁଲା ଗାଈଗୋରୁଙ୍କୁ ଦିଆଯାଇ ପାରେ । ଘରର କାଠ କୁଟା, ଛିଣ୍ଡା କାଗଜ ଅଳିଆ ଟୋକେଇରେ ରଖି ପୋଡ଼ି ଖତ କରାଯାଇପାରେ । ପୁରୁଣା ପତ୍ରପତ୍ରିକା ନିୟମିତ ସାଇତି ରଖିଲେ ପରେ ଅନ୍ୟ କାହାର ପଠନ ଯୋଗ୍ୟ ହେବ । ପିଲାଙ୍କର ପୁରୁଣା ପାଠ୍ୟ ପୁସ୍ତକ ଗରିବ ପିଲାଙ୍କୁ ସାହାଯ୍ୟ କରି-ପାରେ । ଡବା ଖୋଳ, ପେଟ, ଠିପି, ତାର ଭଙ୍ଗାରୁଜା ଜିନିଷର ମରାମତିରେ ଲାଗି ପାରେ । ପୁରୁଣା ଦାନ୍ତଘଷା ବ୍ରସ୍, ଛିଣ୍ଡା ଚପଲ୍ ଓ ଫଟା ଜୋତା ମଧ୍ୟ ମରାମତି କାର୍ଯ୍ୟରେ ଲାଗିପାରେ ।

## ବୈକୁଣ୍ଠ ଭୁବନ

ଆମର ବ୍ୟବହାରରେ ନ ଲାଗିଲେ ସେ ତାହା ଦୁନିଆରେ ଅଦରକାରୀ ହୋଇଗଲା ଏପରି ଭାବିବା ଏକ ସ୍ୱାର୍ଥପରତା । ଏ ଦୁନିଆରେ ଆମ ଛଡ଼ା ଅନ୍ୟମାନେ ଅଛନ୍ତି, ଆମର ଉପକାର କରୁଥିବା ଅନେକ ଜୀବଜନ୍ତୁ ଅଛନ୍ତି, ନ ହେଲେ ତ ବୃକ୍ଷଲତା ଅଛନ୍ତି । ଆମ ଆବର୍ଜନା କ'ଣ ଅନ୍ୟ କାହାର ଆବଶ୍ୟକତା ମେଣ୍ଟାଇ ପାରିବ ନାହିଁ ? ସଜେଇ ଯତ୍ନରେ ରଖି ଜାଣିଲେ ସମ୍ପଦର ସ୍ଥାୟିତ୍ୱ ବଢ଼େ । ଏହା ପରିବାରର ଆର୍ଥିକ ସ୍ୱଚ୍ଛଳତା ବୃଦ୍ଧି କରେ, ଅଭାବ ଅନାଟନ ଦୂରକରେ । ଘରର ଫିଙ୍ଗା ଫୋପଡ଼ାର ବିନିଯୋଗ କରି ଜାଣିଲେ ଘର ଓ ବାଡ଼ି ବଗିଚା ସଫା ସୁତୁରା ରହେ ଓ ବେଶ୍ ଦିପଇସା

ଲାଭ ହୁଏ । ସେ ଘରଟି ପ୍ରକୃତରେ ହସି ଉଠେ । ସେଠି ବିଶ୍ରାମ ନେବାକୁ, ପାଠ ପଢ଼ିବାକୁ, ଚିନ୍ତା କରିବାକୁ ବା କାର୍ଯ୍ୟ କରିବାକୁ ଉତ୍ସାହ ଓ ଆଗ୍ରହ ଆସେ । ସେ ଘରେ ଯାହାକୁ ଦେଖିଲେ ତା'ଠାରେ ସହଯୋଗ ଓ ସମନ୍ୱୟର ଇଙ୍ଗିତ ମିଳେ । ସେଭଳି ଘର ଧନଜନ ଗୋପଲକ୍ଷ୍ମୀ ଶିକ୍ଷା ସ୍ୱାସ୍ଥ୍ୟ ସବୁଥିରେ ପରିପୂର୍ଣ୍ଣ ହୋଇଥାଏ । ପରସ୍ପର ସୁଖ ଦୁଃଖରେ ସମଭାଗୀ ହୋଇ ସେଠି ସମସ୍ତେ ସବୁ ହସି ହସି ସହି ନିଅନ୍ତି । କବିଙ୍କ ଭାଷାରେ "ବୈକୁଣ୍ଠ ସମାନ ଆହା ଅଟେ ସେହି ଘର ।"



# ପରିବେଶ ସୁରକ୍ଷା

ପରିବେଶ ସୁରକ୍ଷିତ ରହୁ । ଏହା ସମସ୍ତଙ୍କର ଆନ୍ତରିକ ଇଚ୍ଛା । କିନ୍ତୁ ହୋଇ ପାରୁନାହିଁ । କାହିଁକି ? ଯାହା ସମସ୍ତଙ୍କର ଇଚ୍ଛା ତାହା ପୂରଣ ହୋଇ ପାରୁନାହିଁ । ପ୍ରକୃତରେ ଏଥିପାଇଁ ଆମେ ସମସ୍ତେ ଦାୟୀ । ଆମେ ଯାହା ଚାହୁଁଛୁ ତା'ର ଓଲଟା କରି ବସୁଛୁ । ଯାହା ଜାଣୁଛୁ ତାହା କରୁନାହୁଁ ଜଙ୍ଗଲ ରହିଲେ ସମୟାନୁସାରେ ବର୍ଷା ହେବ, ବାୟୁମଣ୍ଡଳରେ ଅମ୍ଳଜାନ ଅନୁପାତ ଠିକ୍ ରହିବ, ମୃତ୍ତିକା ଧୋଇ ହୋଇଯିବନାହିଁ, ବଣର ଜୀବଜନ୍ତୁମାନେ ତାଙ୍କ ବଂଶ ବଢ଼ାଇ ପାରିବେ, ଦୁର୍ମୂଲ୍ୟ ଔଷଧ ଗଛ ଗୁଡିକ ସଂରକ୍ଷିତ ହେବ । ତାହାହେଲେ ଆମେ ଜଙ୍ଗଲ କାଟୁଛୁ କାହିଁକି ? କାରଣ ଆମ ଚୂଲି ଅଜଳା ରହିଲେ ଆମେ ଜଙ୍ଗଲର ମାହାତ୍ମ୍ୟ ଭୁଲିଯାଉ । ଖାଲି ଜାଳେଣି ପାଇଁ ନୁହେଁ, ଆମ ସଂଖ୍ୟା ବଢ଼ୁଛି, ଆମର ଘର ଦରକାର, କାଠ ଉପକରଣ ଦରକାର, ଅଧିକ କୃଷିଜମି ପାଇଁ ଜଙ୍ଗଲ ସଫା କରିବାକୁ ହେବ । କାଗଜକଲ ପାଇଁ ଅରଣ୍ୟ ସାମଗ୍ରୀ ଲୋଡ଼ା । ଲୁହା ଇସ୍ପାତ କାରଖାନା, ଆଲୁମିନିୟମ କାରଖାନା, ସିମେଣ୍ଟ ଓ ସାରକାରଖାନା କେତେ କ'ଣ ଦରକାର । ଏଥିପାଇଁ ସ୍ଥାନ, ବସତି ଓ ଉପକରଣ ଖୋଜି ଖୋଜି ଆମେ ଜଙ୍ଗଲ ସଫା କରି ଚାଲିଛୁ । ଏବେ ଆମେ କେଉଁଠି ଅଟକିବୁ ?

ଆମରିତ ଆବଶ୍ୟକତା ବହୁତ ବେଶୀ । ଅଭାବ କଥା କହିଲେ ନସରେ । ଆମେରିକା ଓ ରୁଷିଆକୁ ଚାହିଁଲେ ତ ଆମେ କାହିଁ ପଛରେ ପଡ଼ିଛୁ । ଆମକୁ ଚାଲିବାକୁ ହେବ, ବୋଧହୁଏ କେବଳ ଚାଲିଲେ ହେବନାହିଁ ଦୌଡ଼ିବାକୁ ହେବ । ଆମ ମୁନିଋଷିମାନେ କହିଥିଲେ 'ଚାଲିବା ମାନେ ଜୀବନ ।' ଯେତେବେଳେ ଆମ ବିଦେଶୀ ଭାଇମାନେ ଧାଉଁଛନ୍ତି ସେତେବେଳେ

ଆମେ ବସିପଡ଼ ଜଙ୍ଗଲ ପାଇଁ ବାହୁନିଲେ ଚଳିବ କି ? ପ୍ରକୃତରେ ଆମେ ଏକ ଛକରେ ପହଞ୍ଚିଛୁ । କେଉଁ ରାସ୍ତାରେ ଯିବୁ ଠିକଣା କରିପାରୁନୁ । ପରିବେଶ ବୈଜ୍ଞାନିକ କହନ୍ତି—ପରିବେଶ ବଞ୍ଚିଲେ ଆମେ ବଞ୍ଚିବୁ । ପ୍ରଦୂଷଣ ସଂସ୍ଥାର ଚେତାବନୀ ବାୟୁମଣ୍ଡଳ ଅଙ୍ଗାର କାମ୍ଳରେ ଭାରାକ୍ରାନ୍ତ, ନଦୀଜଳ ଲବଣାକ୍ତ, ସମୁଦ୍ର ଜଳ ତୈଳାକ୍ତ, ଶସ୍ୟ ପନିପରିବା ଇତ୍ୟାଦି ରାସାୟନିକରେ ଦୂଷିତ । ଏ ମଣିଷ ବିଚରା କାହାକଥା ଶୁଣିବ ? ଘରେ ଭାତ ନାହିଁ, ଏଣେ ପଲେ କୁଟୁମ୍ବ, ତେଣେ ସବୁଜ ବିପ୍ଳବ ଓ ଶିଳ୍ପ ହାତଠାରୁଛି, ଠିକ୍ ବାଟଘେରି ଠିଆ ହୋଇଛି ପରିବେଶ ବିଜ୍ଞାନୀ ଓ ପ୍ରଦୂଷଣ ସଂସ୍ଥା । ଏଭଳି ନ ଯଯୌ ନ ତସ୍ଥୌ ଅବସ୍ଥାରେ ମଣିଷକୁ ଅଟକାଇ ହେବନାହିଁ । କିନ୍ତୁ ଗୋଟିଏ ମୀମାଂସା ଶୁଣାଇବାକୁ ହେବ ।

ଏକ ସରଳ ମୀମାଂସା ହେଲା—ମଧ୍ୟମପନ୍ଥା ସାପ ମରିବ ଅଥଚ ବାଡ଼ି ଭାଙ୍ଗିବନି । କଳକାରଖାନା ବଢ଼ି ଚାଲିଥିବ କିନ୍ତୁ ବାୟୁ ଓ ଜଳ ଦୂଷିତ ହେବନାହିଁ । ଯଥା ସମ୍ଭବ ଅଳ୍ପ ରାସାୟନିକ ଓ ପୋକମରା ଔଷଧ ବ୍ୟବହାର କରି ଯେପରି ବହୁତ ଅମଳହୁଏ ସେଥିପାଇଁ ଚେଷ୍ଟା ଅବ୍ୟାହତ ରହିବ । ଏହା ଏକ ଆଦର୍ଶ ସମାଧାନ । ହୋଇପାରିଲେ ଭଲ । ପୂରାପୂରି ହୋଇ ନପାରିଲେ ବି ଉପଯୁକ୍ତ ଗବେଷଣା ଓ ପରୀକ୍ଷା ନିରୀକ୍ଷା ବଳରେ ଅନେକାଂଶରେ ଆମେ ଏହା ହାସଲ କରିପାରିବା କିନ୍ତୁ ଏହା ନିଶ୍ଚିତ କଥା ଯେ ମନୁଷ୍ୟ ଯେଉଁ ପ୍ରକାର ପ୍ରଗତି ପାଇଁ ବ୍ୟାକୁଳ ତାହା ପରିବେଶ ପରିପନ୍ଥୀ । ଆମ ଗୃହଦାର ଆଭିମୁଖ୍ୟ ବଦଳାଇବାକୁ ପଡ଼ିବ । ଆମେ ପରମାଣୁ ଅସ୍ତ୍ରରେ ଲଢ଼ିବା ପାଇଁ ପ୍ରସ୍ତୁତ ହେବା, କ୍ଷେପଣାସ୍ତ୍ର ନିକ୍ଷେପ ପାଇଁ କ୍ଷେତ୍ର ବିସ୍ତାର କରିବା, ଏଣେ କିନ୍ତୁ ସାଧାରଣଙ୍କର ଜୀବନ ଧାରଣର ମୌଳିକ ଗୃହଦା ପୂରଣ ପାଇଁ କିଛି ବ୍ୟବସ୍ଥା କଲାବେଳକୁ ପ୍ରଦୂଷଣ କଟକଣା ଲାଗୁ କରିବା, ତାହା ହେଲେ ଆମ ଯୋଜନାରେ କୌଣସି ସଙ୍ଗତି ବା ସାମଞ୍ଜସ୍ୟ ରହିବ ନାହିଁ ।

ଦେଶ ଦେଶ ମଧ୍ୟରେ ଥିବା ସୀମାରେଖା ଅତିକ୍ରମ କରି ମହାସାଗର, ବାୟୁମଣ୍ଡଳ ଓ ମହାକାଶ ବ୍ୟାପି ରହିଛି । ଏସବୁର ପାରିବେଶିକ ସୁରକ୍ଷା ପାଇଁ ଏକ ଆନ୍ତର୍ଜାତିକ ବୁଝାମଣା ଆବଶ୍ୟକ । ସମର ପ୍ରସ୍ତୁତି ଓ

ପ୍ରତିଯୋଗିତା ଲାଗିରହିଲେ ଏହା କେବେ ସମ୍ଭବକି ? ଏଭଳି ଏକ ଆନ୍ତର୍ଜାତିକ ବୁଝାମଣା ବୋଧହୁଏ ବହୁଦିନ ପାଇଁ ଆମ ନିକଟରେ ସ୍ୱପ୍ନ ହୋଇ ରହିବ । ଆମଦେଶ ମଧ୍ୟରେ ଯାହା ହିଁ ସମ୍ଭବ ଆମେ କେବଳ ତାହାହିଁ କରି ପାରିବା ।

ଏଥିପାଇଁ, ପରିବେଶ ସୁରକ୍ଷାର ପ୍ରଥମ ପଦକ୍ଷେପ ହେଲା—ଜନସଂଖ୍ୟା ନିୟନ୍ତ୍ରଣ । ଜନସଂଖ୍ୟାର ମୌଳିକ ବୃଦ୍ଧିଦାକୁ ଆମେ ଏଡ଼ାଇ ଦେଇ ପାରିବା ନାହିଁ । ଏଥିପାଇଁ ଯାହା ଦରକାର ସେଥିରେ ପରିବେଶର ସ୍ଥିତାବସ୍ଥା ବଦଳିବ । ଜୀବନର ବିକାଶ ହେଉଥିଲା ବେଳେ ଆମେ ସ୍ଥିତାବସ୍ଥାର ସଂରକ୍ଷଣ କରିପାରିବାନାହିଁ । କାରଣ ପ୍ରଗତି ଏକ ସାମୁଦ୍ରିକ ପ୍ରକ୍ରିୟା । କୋଟି କୋଟି ଇତର ପ୍ରାଣୀ ପରିବେଶରେ ଯେଉଁ ପ୍ରକ୍ରିୟା ସୃଷ୍ଟି କରନ୍ତି, ପ୍ରକୃତି ତା'ର ସନ୍ତୁଳନ ଦ୍ୱାରା ତାକୁ ସଜାଡ଼ି ନିଏ । କିନ୍ତୁ ଜଣେ ସଭ୍ୟ ମଣିଷ ଯାହାକରେ ତାକୁ ପରିବେଶରେ ସମତୁଲ କରିବାକୁ ପ୍ରକୃତି ଅସମର୍ଥ । ମଣିଷ ଯେତେବେଳେ ଇତର ପ୍ରାଣୀପରି ଆଦିମ ଅବସ୍ଥାରେ ଥିଲା ସେ ପ୍ରାକୃତିକ ଦୈବଦୁର୍ବିପାକର ଶିକାର ହେଉଥିଲା । ପ୍ରକୃତି କୌଣସି ଇତର ପ୍ରାଣୀପରି ତା ଉପରେ କର୍ତ୍ତୃତ୍ୱ ଜାହିର ରଖୁଥିଲା । ଏବେ ସେ ବିଜ୍ଞାନ ବଳରେ ବଳୀୟାନ୍ । ସୃଷ୍ଟିଲେ ପ୍ରକୃତିକୁ ବଦଳେଇ ଦେଇ ପାରୁଛି । ବନ୍ୟା, ମରୁଡ଼ି, ମହାମାରୀକୁ ସମୟ ସମୟରେ ମନୁଷ୍ୟକୃତ କୁହାଗଲାଣି । ପ୍ରାକୃତିକ ପ୍ରକ୍ରିୟା ଉପରେ ସେ ଆଜି ନାନାପ୍ରକାରେ ହସ୍ତକ୍ଷେପ କରି ଲାଗିଛି । ସେ ନିଜେ ନିଜର ଭାଗ୍ୟ ବିଧାତା ହେବାକୁ ଚେଷ୍ଟା କରୁଛି । ଏ ପରିସ୍ଥିତିରେ ସେ କେବେ ପରିବେଶର ସ୍ଥିତାବସ୍ଥା ରକ୍ଷା କରି ପାରିବ ନାହିଁ କିମ୍ବା ଅତୀତ ପରିବେଶକୁ ଫେରି ପାଇବ ନାହିଁ । ସେ ତା ନିଜ ପାଇଁ ଏକ ନୂତନ ପରିବେଶ ସୃଷ୍ଟି କରିବ ।

ସେହି ନୂତନ ପରିବେଶରେ ଜଙ୍ଗଲ ସଂପଦ ସ୍ଥଳଭାଗର ଏକ ତୃତୀୟାଂଶ ଅଧିକାର କରିବ ସତ କିନ୍ତୁ ସେ ଜଙ୍ଗଲ ତା'ର ପ୍ରାକୃତିକ ରୂପ ହରେଇ ବସିବ । ତାହାହେବ ଏକ ସାମାଜିକ ଜଙ୍ଗଲ, ସଂରକ୍ଷିତ ଜଙ୍ଗଲ ଓ ଅଭୟାରଣ୍ୟ । ବାଘଭାଲୁ ରହିବେ, କିନ୍ତୁ ସେମାନେ ରେଢ଼ାଖୋଲ ବସ୍ତିରେ ନବୁଲି, ନନ୍ଦନକାନନ କିମ୍ବା କୌଣସି ଅଭୟାରଣ୍ୟରେ ପ୍ରତିପାଳିତ ହେବେ ।

କୁମ୍ଭୀର ଗାଧୁଆ କୁଣ୍ଡରେ ଆହାର ନଖୋଜି ପ୍ରାଣୀ ବିଜ୍ଞାନୀର ହାତକୁ ଅନେଇ ରହିବ । ନନ୍ଦନକାନନର ତାର ଜାଲ ଭିତରେ ଗର୍ଜୁଥିବା ସିଂହ ପାଖରେ ଲୋକଙ୍କର ଯେତିକି ଭିଡ଼ ହେବ ପାଖରେ ପୋଷା ହେଉଥିବା ବିଲୁଆମାନେ ମଧ୍ୟ ସେତିକି ଗହଳି ଜମେଇବେ । ବନ ଔଷଧ ଗଛମାନେ ବନରୁ ଆସି ଉଦ୍ଭିଦ ବିଭାଗର ଉପବନରେ ଶୋଭା ପାଇବେ । ଆମର ଉନ୍ନତ ଗବେଷଣା ବଳରେ ଆମ ନୂତନ ପରିବେଶ ପାଇଁ କି ପଶୁପକ୍ଷୀ କୀଟ ପତଙ୍ଗ ସରୀସୃପ ଓ ବୃକ୍ଷଲତା ଦରକାର, କେତେ ଦରକାର ତାହା ଆମେ ସ୍ଥିର କରିବୁ କିମ୍ବା ଆମ ସୁପରକମ୍ପ୍ୟୁଟରକୁ ନିଯୁକ୍ତ କରାଇବୁ । ଏସବୁ ବିଷୟରେ କେତେ ପରିମାଣରେ ଆମେ ପ୍ରକୃତି ଉପରେ ନିର୍ଭର କରିବୁ ତାହା ମଧ୍ୟ ଏହାଦ୍ୱାରା ସ୍ଥିର କରାଯିବ । ପ୍ରକୃତି ମନୁଷ୍ୟର ଏ ପ୍ରାଦୁର୍ଭାବକୁ ପୂର୍ଣ୍ଣ ସଜାଡ଼ି ପାରିବ ନାହିଁ ଏ ବିଷୟରେ ମନୁଷ୍ୟ ନିଶ୍ଚିତ । କେବଳ ମନୁଷ୍ୟ ହିଁ ତା ପାଇଁ ଉପଯୁକ୍ତ ପରିବେଶ ସୃଷ୍ଟି କରିବ ।



# ସମସ୍ତେ ସହରାଭିମୁଖୀ

ସହରରେ ସବୁ ସୁବିଧା । ସେଠି ଥିଲାବାଲାଏ ରହନ୍ତି । କୋଠାସବୁ ବଡ଼ ବଡ଼ । ସହରର ଡାକ୍ତରଖାନା ବଡ ଡାକ୍ତରଖାନା । ସେଠି ସଡ଼କ କଡ଼ରେ ନାମଜାଦା ଡାକ୍ତରମାନେ ଚିକିତ୍ସା ସଦନ ଖୋଲି ବସିଛନ୍ତି । ଅସମୟରେ ଅବସର ନେଇ ଦୁଃଖୀରଙ୍କୀଙ୍କ ସେବାପାଇଁ ନିଜକୁ ପୂରା ସମର୍ପି ଦେଇଛନ୍ତି । ତେଣୁ ଗାଁ ଗଣ୍ଡାର ସବୁ ହତାଶ ରୋଗୀ ଶୃହାନ୍ତି ଥରେ ଆସି ସହରରେ ଶେଷ ଚେଷ୍ଟା କରିବାକୁ ସହରର କେଉଁଠି ମଶାମାନେ ଶୁଆଇ ଦେଉନାହାନ୍ତି, ଓଡ଼ଶ ଓଡ଼ଶାରେ ଦାଦାଗିରି କରୁଛି, ପାଗଳା କୁକୁର ମାଡିଲାଣି, ଏସବୁ ଠିକନାଗି ଭାବେ ଖବର କାଗଜରେ ଛପି ହୋଇଯାଏ । ଦୁଧ, ମାଛ, ମାଂସ, ଅଣ୍ଡା ଅଶେଷ ପ୍ରକାର ଚନିପରିବା ଦୁର୍ମୂଲ୍ୟ ହେଲେ ବି କିଣିବାକୁ ମିଳୁଛି । ବୁଢ଼ା ବୁଢ଼ୀଏ କହନ୍ତି—ସହରରେ ପଇସା ଦେଲେ, କେବଳ ବାପମା ଛଡ଼ା ଅନ୍ୟ ସବୁ କିଣିବାକୁ ମିଳେ । ଏଭଳି ଏକ ପ୍ରାଚୁର୍ଯ୍ୟପୂର୍ଣ୍ଣ ସହରରେ କାର୍ଯ୍ୟ ପୁଣି ସମସ୍ୟା ? ଅସମ୍ଭବ ଟିକିଏ ଗମ୍ଭୀରେଇ ଭାବିଲେ ଅସମ୍ଭବ କପରି ସମ୍ଭବ ହୋଇଛି ଜଣାପଡ଼ିବ ।

ଆମ ଗାଁମାନଙ୍କରେ ରହନ୍ତି ଶତକଡ଼ା ୮୦ ଭାଗ ଲୋକ । ସଂଖ୍ୟାରେ ସେମାନେ ୫୦।୬୦ କୋଟି । ଗାଁ ଲୋକେ ବଡ଼ ସରଳ ଭାରତୀୟ ଭାବନାରେ ଉଦ୍‌ବୁଦ୍ଧ । ଭାରତର ସଂସ୍କୃତି ଏବେ ବି ସେଠି ଅକ୍ଷତ ଅବସ୍ଥାରେ ଅଛି । ଅଭାବ ସେମାନଙ୍କୁ ବିଚଳିତ କରିନି କି ସେମାନେ ଦୁର୍ବୃତ୍ତ ଅପଥକୁ ଯାଇନାହାନ୍ତି । ଗାନ୍ଧିଜୀ କହୁଥିଲେ—ଭାରତର ଆତ୍ମା ଗାଁରେ ଘୂରି ବୁଲୁଛି । ଆମ ନେତାଏ

ଗାନ୍ଧୀଜୀଙ୍କୁ ସମ୍ମାନ ଦେଲେ । ଗାଁ ଆଡ଼େ ତାଙ୍କ ନଜର ପଡ଼ିଲା । ସବୁ ଯୋଜନାରେ ଗାଁର ସମସ୍ୟାକୁ ଆଗ ତାଲିକାଭୁକ୍ତ କଲେ । ଗାଁକୁ ରାସ୍ତା ଲମ୍ବିଗଲା, ବସ ଚାଲିଲା ଗାଁରେ ସୁଲଭ ଦୋକାନ ଖୋଲିଗଲା । ତଥାପି ଏବେ ବି କେତେକ ଗାଁ ଅଛି ଯେଉଁଠିକି ଯମ ଯିବାକୁ ଭୟ କରେ । ଡାକ୍ତରମାନେ କପରି ଯିବେ ? ସେମାନେ ତ ସାଧାରଣ ମଣିଷ, ସହରରେ ବଢ଼ିଛନ୍ତି ଓ ପଢ଼ିଛନ୍ତି, ସାଙ୍ଗସାଥୀ ସବୁ ସହରରେ । ଏବେ ଅବଶ୍ୟ ବାଧ୍ୟବାଧକତାରେ, ବେଳେବେଳେ ଅଧିକ ଭତ୍ତାପାଇ ସରକାର ଲୋଭରେ ଯାଉଛନ୍ତି । ତଥାପି ଗାଁବାଲାଙ୍କ ମନ ମାନୁନାହିଁ । ଯେଉଁମାନେ ଟିକଏ ପାଠଶାଠ ପଢ଼ୁଛନ୍ତି, ଗାଁରୁ ଛୁଟିପିଟି ହୋଇ ପଳାଇ ଆସିବାକୁ ଗୋଡ଼ ଟେକି ବସିଛନ୍ତି । ଗାଁରେ ଯିଏ ଟିକଏ ମୁଣ୍ଡ ଟେକୁଛି ତା'ର ଏକମାତ୍ର ଲକ୍ଷ୍ୟ ସହରରେ ଜମି ଖଣ୍ଡିଏ କିଣିବ । ଏ ପୁରୁଷ ନ ହେଲେ ବି ତାଙ୍କ ପର ପୁରୁଷ ତ ସହରରେ ରହିବାକୁ ସୁଯୋଗ ପାଇବ ।

ପ୍ରକୃତରେ ସମସ୍ତେ ଆଜି ସହରାଭିମୁଖୀ । କେବଳ ଟି.ଭି ନାଟକର ନାୟକଠାରେ ଆମେ ଗାଁକୁ ଯିବାର ବ୍ୟାକୁଳତା ଲକ୍ଷ୍ୟକରୁ । ଏହା ଅନୁମାନ ନୁହେଁ, ପରିସଂଖ୍ୟାନରୁ ଜଣାପଡ଼ୁଛି । ୧୯୭୧ରୁ ୧୯୮୧ ମଧ୍ୟରେ ଘରତର ଲୋକସଂଖ୍ୟା ବଢ଼ିଲା ଶତକଡ଼ା ୨୫ ଭାଗ ! ଅଥଚ ସହରରେ ଜନସଂଖ୍ୟା ବଢ଼ିଲା ଶତକଡ଼ା ୬୦ ଭାଗ । ଏହି ବୃଦ୍ଧିର ଅଧାଅଧି ସହର-ବାସୀଙ୍କ ପରିବାର ପ୍ରସାରଣ ହେତୁ ଘଟିଛି । ଅନ୍ୟ ଅଧିକ ଗାଁରୁ ସହରକୁ ଆସିଛନ୍ତି । ୧୯୮୧ରେ ଘରତରେ ସହରବାସୀ ଥିଲେ ପ୍ରାୟ ୧୬ କୋଟି, ୨୦୦୦ ଖ୍ରୀଷ୍ଟାବ୍ଦ ବେଳକୁ ସେମାନଙ୍କ ସଂଖ୍ୟା ହେବ ପ୍ରାୟ ୩୫ କୋଟି, ପ୍ରାୟ ଦୁଇଗୁଣ ।

ଏଥିରୁ ଅନୁମାନ କରନ୍ତୁ ଆମେ କପରି ସହରରେ ରହିବାକୁ ଝୁଣିହେଉଛୁ । ଏହାର ଅବଶ୍ୟ ଅନେକ କାରଣ ଅଛି—ପ୍ରାୟ ସବୁ ସରକାର ସହରରେ, ସେଠାରେ ବଣିକ ବେପାର ଭଲ ଚାଲେ, ପିଲାଙ୍କ ପଢ଼ାପଢ଼ିର ସୁବିଧା ଅଛି, ସେଠୁ ରେଲପଥ ବସ୍ ରାସ୍ତା ବା ବଡ଼ ସଡ଼କ ସବୁଆଡ଼କୁ ଲମ୍ବିଛି । ପ୍ରତିଦିନ କୋଠାଡିଆର, ମାଲବୁହା, ରିକ୍‌ସାବାଲା ଚାଲିଛି । ତେଣୁ କାମ ମିଳିଯାଉଛି, ପେଟ ଅପୋଷା ରହୁନ । ଫଳରେ ଗାଁର

ତେଣୁ ଆମାନେ ଗାଁରେ ନିକମା ହୋଇ ନ ବସି ବନ୍ଧୁବାନ୍ଧବ ଉଣ୍ଡି ଉପରେ ସହରରେ ମୁଣ୍ଡ ଗୁଞ୍ଜିବେ ଲାଗି ପଡ଼ୁଛନ୍ତି ।

## କଳଙ୍କିତ ବସ୍ତି

ଏହି ଯେଉଁମାନେ ମଜୁରିଆ ପେଟ ପାଟଣା ପାଇଁ ସହରକୁ ଧାଇଁଲେ ସେମାନେ ରହିବେ କେଉଁଠି ? ରାସ୍ତା କଡ଼ରେ ବାବୁଭାୟାଙ୍କ ବାରଣ୍ଡାରେ, ଷ୍ଟେସନ ପ୍ଲାଟଫର୍ମରେ କମ୍ବା ଝୁମ୍ପୁଡ଼ିରେ ଆଶ୍ରା ଖୋଜିଲେ । ସେମାନେ ଠେଲାଗାଡ଼ିବାଲାଠାରୁ ଖାଇବେ, ପାଇପ ଫାଟିଲେ ପାଣି ପିଇବେ, ରାସ୍ତା କଡ଼ରେ ଶୌଚ ହେବେ । ଏମାନଙ୍କର ସର୍ବନିମ୍ନ ଆବଶ୍ୟକତା ମେଣ୍ଟାଇବା ପାଇଁ ସହରର ରାସ୍ତା, ପାର୍କ ବା ପଡ଼ିଆ ଯଥେଷ୍ଟ ନୁହେଁ । ତେଣୁ ସହରରେ କୋଠା ଉପରକୁ ଉପର ଯେତିକ ଉଠୁଛି ଝୁମ୍ପୁଡ଼ି ଖୁନ୍ଦାଖୁନ୍ଦି ହୋଇ ସେତିକ ଲମ୍ବୁଛି । ଫଳରେ ସହରବାସୀଙ୍କ ପାଇଁ ସ୍ଲମ୍ ବା ବସ୍ତି ଆଜି ଆତଙ୍କ ସୃଷ୍ଟି କରିଛି ।

ବଡ଼ ବଡ଼ ସହରରେ ଜନସଂଖ୍ୟାର ଶତକଡ଼ା ୨୦ ଭାଗ ରହନ୍ତି ଏହି କଳଙ୍କିତ ବସ୍ତିରେ । ବାଙ୍ଗାଲୋରରେ ଶତକଡ଼ା ୧୦ ଭାଗ, କାନପୁରରେ ୩୭ ଭାଗ ବମ୍ବେରେ ୩୮ ଭାଗ ଓ କଲିକତାରେ ୪୨ ଭାଗ । ଅନୁମାନ ହୁଏ ୨୦୦୦ ଖ୍ରୀଷ୍ଟାବ୍ଦ ବେଳକୁ ସହରର ସମୁଦାୟ ଜନସଂଖ୍ୟାର ଅଧାଅଧି ରହିବେ ଏହି ଅନ୍ଧାରିଆ ପୂତିଗନ୍ଧମୟ ବସ୍ତିରେ । ବସ୍ତିବାଲାଏ ପ୍ରତିଦିନ କଞ୍ଚାପଇସା ପାଆନ୍ତି ସତ କିନ୍ତୁ ଏମାନଙ୍କ ଦୁଃଖକଷ୍ଟ ଗାଁବାଲାଙ୍କଠାରୁ ଅଧିକ ମର୍ମନ୍ତୁଦ । ଏମାନଙ୍କୁ ଶାସନ କରନ୍ତି ବସ୍ତିର ଦାଦାମାନେ । ନିଶା-ପାଣିରେ ଏମାନେ ଭୋକ ମାରନ୍ତି, ମୁଣ୍ଡଝାଳ ତୁଣ୍ଡରେ ମାରି ଏମାନେ ସହରର କୋଠା ଉଠାନ୍ତି, ସଡ଼କ ରାସ୍ତା ଲମ୍ବାନ୍ତି ଅଥଚ ଏମାନଙ୍କର ମୁଣ୍ଡ ଗୁଞ୍ଜିବାକୁ ସ୍ଥାନ ନାହିଁ, ଏମାନଙ୍କ ବସ୍ତିକୁ ରାସ୍ତା ନାହିଁ । ତଥାପି ବତି ପାଖକୁ ଆଲୋକରେ ଆକୃଷ୍ଟ ହୋଇ ପତଙ୍ଗମାନେ ଆସିଲା ପରି, ଆଜି ସରଳ ନିରୀହ ଗାଁବାଲାଏ ସହରର ଚାକଚକ୍ୟରେ ଧାଇଁ ଆସି ଏହି ସ୍ଲମ୍‌ର ଶିକାର ହେଉଛନ୍ତି । ପ୍ରକୃତରେ ଏହି ସହର ପ୍ରବାସୀ ଗାଁଉଁଲି ଭାଇ ଭଉଣୀମାନଙ୍କର ଦୁଃଖ ଦୁର୍ଦ୍ଦଶା ବର୍ଣ୍ଣନା କରିବାକୁ ଭାଷା ନାହିଁ ।

ବସ୍ତି ବାଲଙ୍କ ପାଇଁ ସହରବାସୀମାନେ ଉଚ୍ଛନ୍ନ । ବସ୍ତି ବାଲାଏ ପିଇବା ପାଣି ପାଆନ୍ତି ନାହିଁ । ବସ୍ତିର ଶତକଡ଼ା ୯୦ ଭାଗ ଅଞ୍ଚଳରେ ନାଳ ନର୍ଦ୍ଦମା ସଫା କରିବାର ବ୍ୟବସ୍ଥା ନଥାଏ । ଝରକା ନଥିବା ଅନ୍ଧାରିଆ, ଓଦା, ସନ୍ତସନ୍ତିଆ ଘରେ ଅଧିକାଂଶ ରହନ୍ତି । ଅଖାଦ୍ୟ ଓ ଅପୁଷ୍ଟିକର ଆହାରରେ କୌଣସି ମତେ ଜୀବନ ବଞ୍ଚାନ୍ତି । ଏ ଅଞ୍ଚଳରେ ବିଶେଷତଃ ସ୍ତ୍ରୀ ଲୋକ ଓ ପିଲାମାନଙ୍କ ଅବସ୍ଥା ଅତି ଶୋଚନୀୟ । ICMR (ଭାରତର ସ୍ୱାସ୍ଥ୍ୟ ଗବେଷଣା ସଂସ୍ଥା) ମାଦ୍ରାଜ, ଦିଲ୍ଲୀ ଓ କଲିକତାର ବସ୍ତି ଅଞ୍ଚଳରେ ଶିଶୁମୃତ୍ୟୁକୁ ନେଇ ଏକ ସର୍ବେକ୍ଷଣ କରିଥିଲେ । ଦେଖାଗଲା ଏ ଅଞ୍ଚଳମାନଙ୍କରେ ୧ ହଜାର ଜୀବନ୍ତ ଶିଶୁ ଜନ୍ମ ହେଲେ ସେଥିରୁ ୫୪ରୁ ୯୧ ଜଣ ପ୍ରାଣ ହରାଇଥାନ୍ତି । ପ୍ରାୟ ୧୩ ପ୍ରତିଶତ ପିଲା ଭାରତର ସହର ତଳି ବସ୍ତି ଅଞ୍ଚଳରେ ରୁହନ୍ତି । ସେମାନଙ୍କ ମଧ୍ୟରୁ ପ୍ରାୟ ୩.୬ ପ୍ରତିଶତ ପିଲାଙ୍କର ବୟସ ୪ ବର୍ଷରୁ କମ୍ । ବନା ଚିକିତ୍ସାରେ ଶତକଡ଼ା ୨୯ ଭାଗ ଶିଶୁ ଓ ୨୨ ଭାଗ ପିଲା ମୃତ୍ୟୁ ବରଣ କରିଥାନ୍ତି ।

## ସହରର ବାଲ୍ୟସହଚର

ପୁରୁଣା ସହରମାନଙ୍କରେ ଯେଉଁ କେତେକ ଖାଲୁଆ ଅଞ୍ଚଳ ବା ଗାଡ଼ିଆ ଡୋବା ଅଛି ସେଗୁଡ଼ିକ ସଂଖ୍ୟାରେ ନ ବଢ଼ିଲେ ମଧ୍ୟ ସେମିତି ଅଯତ୍ନରେ ପଡ଼ିରହିଛନ୍ତି । ଖରାଦିନେ ଶୁଖି ଅଳିଆ ଗଦା ହେଉଛନ୍ତି, ବର୍ଷାଦିନେ ଫୁଲିଉଠି ବନ୍ୟା ମୂର୍ତ୍ତି ଧରୁଛନ୍ତି । ବର୍ଷେ ବର୍ଷେ ସେଗୁଡ଼ିକର ସୀମା ହାକିମମାନଙ୍କ ବାରଣ୍ଡା ଟପି ବୈଠକ ଘର ଭିତରକୁ ପ୍ରସାରିତ ହୁଏ । ସେଇ କେତେଦିନ ସାହେବବାବୁମାନେ ନିର୍ବିକାର ଚିତ୍ତରେ ଖଟ ଓ କାନ୍ଥ ଥାକରେ କଳାଷପତ୍ର ରଖି ଚୋଟଚଳ ହୁଅନ୍ତି । ଖବର କାଗଜ ପ୍ରତିନିଧିମାନେ କହନ୍ତି ୧୦ ବର୍ଷ ତଳର ବର୍ଷାଦିନିଆ ଫଟୋର ବ୍ଲକ୍‌ରେ ଏବେ ବି କାମ ଚଳୁଛି । କିଏ ଜାଣେ ଏ ମେଳକ ଆଉ କେତେ ବର୍ଷ ଲାଗି ରହିବ ?

ସହରମାନଙ୍କରେ ରାସ୍ତା ତିଆରି ଓ କୋଠାଉଠା ସବୁ ଋତୁରେ ଚାଲିଛି । ତେଣୁ ବର୍ଷସାରା ତଡ଼ାତଡ଼ି ଓ ଖୋଳାଖୋଳିର ବିରାମ ନାହିଁ । ଫଳରେ ଅବରୁଦ୍ଧ ନଳା ଓ ସହରର ବାଲ୍ୟସହଚର ଗଡ଼ିଆ ପୋଖରୀଙ୍କ ମେଳରେ ମଶାମାନେ ସୁରୁଖୁରୁରେ ବଂଶବିସ୍ତାର କରନ୍ତି । ସେମାନେ ଏବେ

ସହରବାସୀଙ୍କୁ ଲୁଚି ଛପି ରାତିରେ ଆକ୍ରମଣ କରୁନାହାନ୍ତି; ଦିନରେ, ପଙ୍ଖା ବୁଲୁଥିବାବେଳେ ମଧ୍ୟ ହିମାଳୟର ସେପଟୁ ପଲପଲ ଚୀନା ସୈନ୍ୟ ମାଡ଼ି ଆସିଲା ପରି ସେମାନେ ଆଲମାରୀ ପଛପଟୁ ଓ କାନ୍ଥ ଆଡ଼ୁ ଉଡ଼ିଆସି ମୁହାଁମୁହିଁ ଆକ୍ରମଣ କରୁଛନ୍ତି । ବାର୍ଷିକ ଉତ୍ସବ ପାଳିଲା ପରି ବର୍ଷରେ ଥରେ ଦୁ'ଥର ମଶାମରା ତେଲ ଛିଞ୍ଚି ଦେଇ ବା ଧୂଆଁ ଛାଡ଼ିଦେଇ ନଗର-ପାଳିକା ସମିତି ନିଶ୍ଚିନ୍ତ ।

## ଫାଇଲେରିଆ ବ୍ୟାପୁଛି

ଏହା ଫଳରେ ଆଜି ହୋଇଛି କ'ଣ ? ୧୯୪୦ ପୂର୍ବରୁ ପାଟନା, କାନପୁର, ଲକ୍ଷ୍ନୌ ଓ ଗୌହାଟୀ ପରି ସହରଗୁଡ଼ିକରେ ଫାଇଲେରିଆ ରୋଗୀଟିଏ ଦେଖିବାକୁ ମିଳୁ ନ ଥିଲା । ଆଜି ସାରା ଦେଶରେ ଫାଇଲେରିଆ ରୋଗ ବ୍ୟାପି ଗଲାଣି । ଏଭଳି ସଂକ୍ରମିତ ରୋଗୀଙ୍କ ସଂଖ୍ୟା ୩୦ କୋଟି ବୋଲି ଅନୁମିତ ହୁଏ । ତାମିଲନାଡୁରେ ଯେତେଲୋକ ମ୍ୟାଲେରିଆ ରୋଗଗ୍ରସ୍ତ ତା'ର ଅଧାଅଧି ଲୋକ କେବଳ ମାନ୍ଦ୍ରାଜ ସହରରେ ।

ଏକ ଅନ୍ଧାରିଆ, ଓଦା, ସନ୍ତସନ୍ତିଆ ନିବୁଜ ଘରେ ଗୁଡ଼ାଏ ଲୋକ ଚଳାଚଳ ହେଲେ ଯକ୍ଷ୍ମା ରୋଗରେ ଆକ୍ରାନ୍ତ ହେବାର ଆଶଙ୍କା ଅଧିକ । ଯକ୍ଷ୍ମାରୋଗ ବିସ୍ତାର ପାଇଁ ସହରତଳି ବସ୍ତି ଅଞ୍ଚଳ ଏକାନ୍ତ ଅନୁକୂଳ । ଦେଖାଯାଇଛି ବସ୍ତି ଅଞ୍ଚଳରେ ଶତକଡ଼ା ୪୦ ଭାଗ ପରିବାର ମାତ୍ର ଗୋଟିଏ କୋଠରୀରେ ରହନ୍ତି । କଲିକତାରେ ଶତକଡ଼ା ୭୦ ଓ ବମ୍ବେରେ ୮୨ ପରିବାରର ଏ ଦୁର୍ଦ୍ଦଶା । ରାସ୍ତାକଡ଼ରେ ଛେପ ଖଙ୍କାର, ପାନପିକ ପକାଇବା ଆମ ଲୋକଙ୍କର ଏକ ବଦଭ୍ୟାସ । ସହରରେ ଅଧିକ ଯାନବାହାନ ଚଳାଚଳ ହେତୁ ସହରରେ ଧୂଳି ଧୂସରିତ ବାୟୁମଣ୍ଡଳରେ ଯକ୍ଷ୍ମା ଜୀବାଣୁ ଅଧିକ ଥିବାର ଆଶଙ୍କା । ଏକେ ତ ସହର ଜନାକୀର୍ଣ୍ଣ, ସେଠି ବିଶୁଦ୍ଧ ବାୟୁ ଓ ଉଜ୍ଜ୍ୱଳ ଆଲୋକର ଅଭାବ, ଏଣେ ପୁଷ୍ଟିକର ଖାଦ୍ୟ ଓ ଟଙ୍କା ଟଣାପରିବାର ଅଭାବରେ ସହରିଆଙ୍କ ଶରୀରର ରୋଗ ନିରୋଧକ ଶକ୍ତି କ୍ଷୀଣ । ଫଳରେ ଯକ୍ଷ୍ମାପରି ମାରାତ୍ମକ ରୋଗର ଜୀବାଣୁମାନେ ସହଜରେ ଶରୀରରେ ଆସ୍ଥାନ ଜମାଇ ବସନ୍ତି ।

# ପାପାବର୍ତ୍ତ

ଶୁଦ୍ଧ ପାନୀୟ ଜଳ ଅଭାବରେ ସହର ବସ୍ତିମାନଙ୍କରେ ବର୍ଷାଦିନେ ଆମାଶୟ, ଆନ୍ତ୍ରିକଜ୍ୱର, କାମଳ ରୋଗର ପ୍ରାଦୁର୍ଭାବ । ଥରେ ଆରମ୍ଭ ହେଲେ ମାସ ମାସ ଧରି ଲାଗିଥାଏ । ସର୍ଦ୍ଦି ଓ ସାଧାରଣ କାଶ ବସ୍ତିରେ ଦେହସୁହା । ଏଥିପାଇଁ ବଡ଼ ଡାକ୍ତରଖାନାରେ ଧାଡ଼ି ଦେବାକୁ ପଡ଼େ ନାହିଁ । ଜ୍ୱର୍ ହେଲେ ମନକୁ ବୁଝାଇବା ପାଇଁ କେତେ ଟାନ ହୋମିଓପାଥିରେ କାମ ଚଳେଇ ନିଆଯାଏ । ସହରରେ ବିଶେଷତଃ ବସ୍ତିମାନଙ୍କରେ ସାଧାରଣ ଚର୍ମରୋଗ ଓ ଯୌନରୋଗର ପ୍ରାଦୁର୍ଭାବ ବେଶି । ସହରପ୍ରବାସୀ ଲୋକମାନେ ପରିବାରଠାରୁ ଦୂରରେ ରହନ୍ତି, ସେମାନଙ୍କୁ ଅଭାବ ଓ ଦୁଶ୍ଚିନ୍ତା ସବୁବେଳେ ଲାଗି ରହିଥାଏ, ଜର ସର୍ଦ୍ଦି ହେଲେ ଗଣ୍ଡିଏ ଫୁଟେଇ ମୁହଁରେ ଦେବାକୁ କି ହାତଗୋଡ଼ ଆଉଁଶି ଦେବାକୁ କେହି ପାଖରେ ନ ଥାଏ । ଏହିଭଳି ଏକ ପ୍ରତିକୂଳ ପରିସ୍ଥିତିରେ କୁପରାମର୍ଶ ଗ୍ରହଣ କରି ସେମାନେ ମାଦକ ଦ୍ରବ୍ୟର ଶିକାର ହୋଇ ପଡ଼ନ୍ତି । ବୁଡ଼ିଗଲେ ଗୋଡ଼ି ତଳକୁ ତଳକୁ । ସେମାନେ ବୁଡ଼ନ୍ତି ତାଙ୍କ ସଙ୍ଗରେ ଅନ୍ୟମାନେ ମଧ୍ୟ ।

ଅସାମାଜିକତା ଆଜି ସହରରେ ସାଧାରଣ ଘଟଣା । ଥିଲାବାଲାଙ୍କ ପୁଅ ଝିଅମାନେ ମଧ୍ୟ ଆସ୍ତେ ଆସ୍ତେ ଏହି ଜାଲ ମଧ୍ୟକୁ ଟାଣି ହୋଇ ଆସୁଛନ୍ତି । କଲିକତା ପରି ସହରରେ ବଡ଼ ଲୋକଙ୍କ ପିଲାଏ ବର୍ଷକୁ ଯେତେ ମାଦକ ବଟିକା ବ୍ୟୟ କରୁଛନ୍ତି, ତାହା ଓଜନ କଲେ, ଟନ୍ ଟନ୍ ହେବ । ଚୋରି, ଡକାୟତି, ପକେଟ କଟା, ଲୁଟ ଭୂଷା, ହତ୍ୟା, ନାରୀଧର୍ଷଣ ଇତ୍ୟାଦି ଯେ କୌଣସି ସହରର ସାଧାରଣ ଦୈନନ୍ଦିନ ଘଟଣା । ସହରର ପ୍ରାଚୁର୍ଯ୍ୟ ଓ ପ୍ରଗତି ମଧ୍ୟରେ ନିମ୍ନ-ଆୟକାରୀ ଦିନ ମଜୁରିଆ ବା ରିକ୍ସାଟଣାଳିର ଯେଉଁ ପ୍ରତିକ୍ରିୟା ହୁଏ ଏହିଭଳି ଗର୍ହିତ କାର୍ଯ୍ୟ ତାହାର କୁପରିଣତି । ଏତିକି ନୁହେଁ ଏହି ପାପାବର୍ତ୍ତରୁ ଜାତ ହୁଅନ୍ତି ନାନା ପ୍ରକାର ମାନସିକ ବିକାରଗ୍ରସ୍ତ ରୋଗୀ । ଦୁଃଖ ଲାଗେ— ସହରକୁ ସେମାନେ ଆସିଥିଲେ କ'ଣ ପାଇଁ ଓ ଶେଷରେ ହେଲେ କ'ଣ ?

୨୦୦୦ ଖ୍ରୀଷ୍ଟାବ୍ଦ ବେଳକୁ ସହରବାସୀଙ୍କ ମାନସିକ ଓ ଶାରୀରିକ ସ୍ୱାସ୍ଥ୍ୟ ପାଇଁ କ'ଣ କିଛି କରି ହେବ ? ନକଲେ ଉପାୟ ନାହିଁ । ଖାଲି

'ଗାଁ' 'ଗାଁ' ବୋଲି ଚିତ୍କାର କରି ଏମାନଙ୍କୁ ଅବହେଳା କଲେ ଯାହା ଅଛି ତାହା ବି ଚାଲିଯିବ । ଯାହା କହନ୍ତି ମୂଳଜମା ବୁଡ଼ିଯିବା କଥା । ଆମେ ଗାଁକୁ ସଜାଡ଼ିଲେ କ'ଣ ହେବ ଗାଁବାଲାଏ ତ ସହରଆଡ଼େ ମୁହାଁଇଛନ୍ତି । ତେଣୁ ଗାଁ ସଜାଡ଼ିବା ସଙ୍ଗେ ସଙ୍ଗେ ସହର ଓଳେଇବାକୁ ହେବ । ଆମେ ତ କେବେ ଗାଁକୁ ସହର କରି ପାରିବା ନାହିଁ, କରିବା ବି ଉଚିତ ନୁହେଁ । ଏଣେ କିନ୍ତୁ ନଜର ନଦେଲେ ସହର ଗୁଡ଼ିକର ଦୁର୍ଦ୍ଦଶା ଗାଁକୁ ବଳିପଡ଼ିବ ।

## ସୁଚିନ୍ତିତ ଯୋଜନା

ସହର ସୁଧାରିବା ପାଇଁ ୟୁନିସେଫ୍ (UNICEF) କେତେକ ସୁଚିନ୍ତିତ ଯୋଜନା କରିଛି । ତାକୁ କୁହାଯାଉଛି ସହରର ମୌଳିକ ସେବା ଯୋଜନା । ସେଗୁଡ଼ିକ ହେଲା—ପ୍ରତିଷେଧକ ବ୍ୟବସ୍ଥା, ମାଗଣା ଶିଶୁଖାଦ୍ୟ ବଣ୍ଟନ, ତରଳ ଝାଡ଼ାର ଗୃହ ଚିକିତ୍ସା, ଶସ୍ତା ପୁଷ୍ଟିକର ଖାଦ୍ୟ ଯୋଗାଣ ଇତ୍ୟାଦି । ଏହାଛଡ଼ା ଶିଶୁମାନଙ୍କର ଶାରୀରିକ ବୃଦ୍ଧି ଓ ସ୍ୱାସ୍ଥ୍ୟ ପ୍ରତି ସଂସ୍ଥା ତରଫରୁ ବାରମ୍ବାର ତଦାରଖ ହୋଇ ପ୍ରତିକାର କରାଯିବ । ବାପମାଙ୍କୁ ସନ୍ତାନ ପ୍ରଜନନର ଦାୟିତ୍ୱ ଓ ସନ୍ତାନ ଜନ୍ମର ଉପଯୁକ୍ତ ବ୍ୟବଧାନ ସଂପର୍କରେ ସତର୍କ କରାଇ ଦିଆଯିବ । ମାନବିକ ମୂଲ୍ୟବୋଧ ସୃଷ୍ଟି କରୁଥିବା ଶିକ୍ଷାର ପ୍ରଚଳନ କରାଯିବ । ସ୍ତ୍ରୀମାନଙ୍କ ପାଇଁ ସନ୍ତାନ ପାଳନ, ଗୃହ-ତତ୍ତ୍ୱାବଧାନ ଓ ବିଭିନ୍ନ ସରଳ ଧନ୍ଦାମୂଳକ ପ୍ରଶିକ୍ଷଣର ଯୋଜନା କରାଯିବ ।

ଏବେ ଉପଲବ୍ଧି କରାଗଲାଣି ସହରର ବଡ଼ ଡାକ୍ତରଖାନା ସହିତ ବସ୍ତି ଓ ଗାଁର ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ଗୁଡ଼ିକୁ ଘନିଷ୍ଠଭାବେ ସଂପୃକ୍ତ କରାଯିବ । କୌଣସି ରୋଗୀ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରରେ ପରୀକ୍ଷା ନକରାଇ ବଡ଼ ଡାକ୍ତରଖାନାରେ ସିଧା ହାଜର ହେବନାହିଁ । ଫଳରେ ଏଥିରୁ ଦୁଇଟି ଉପକାର ମିଳିବ । ସାଧାରଣ ଡାକ୍ତରମାନେ ବିଭିନ୍ନ ପ୍ରକାର ରୋଗୀ ଦେଖି ଅଧିକ ପାରଦର୍ଶିତା ଓ ଆତ୍ମବିଶ୍ୱାସ ଅର୍ଜ୍ଜନ କରିବେ ଏବଂ ସାଧାରଣ ରୋଗୀ ଅଯଥା ଖର୍ଚ୍ଚାନ୍ତ ହେବନାହିଁ । ଦ୍ୱିତୀୟରେ ବଡ଼ ଡାକ୍ତରଖାନାର ଅଭିଜ୍ଞ ଓ ବିଶେଷଜ୍ଞ ଡାକ୍ତରମାନେ ଅଯଥା ରୋଗୀ ଭିଡ଼ରୁ ରକ୍ଷା ପାଇବେ ଓ ମାରାତ୍ମକ ରୋଗର ସଯତ୍ନ ଚିକିତ୍ସାରେ ଅଧିକ ମନୋନିବେଶ କରିବେ । ଏବେ ତ ଆପତ୍ତି ଅଭିଯୋଗ ହୁଏ ବଡ଼ ଡାକ୍ତରଖାନାରେ ଅକ୍ସିଜେନ୍‌ଠାରୁ

ଆରମ୍ଭ କରି ବ୍ୟାକ୍ଟେରିଆ ପର୍ଯ୍ୟନ୍ତ ଅଭାବ ହୋଇ ପଡ଼େ । କିନ୍ତୁ ଏହି ନୂଆ ଯୋଜନା ଚଳାଇବାକୁ ହେଲେ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରକୁ ଡାକ୍ତର, ସହଯୋଗୀ କର୍ମଚାରୀ, ଆବଶ୍ୟକ ଔଷଧ ଓ ଉପକରଣ ଆଦିରେ ପରିପୂର୍ଣ୍ଣ କରିବାକୁ ହେବ । ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ଉପରେ ରୋଗୀର ଭରସା ନଆସିଲେ ପୁଣି ଯେଉଁ କଥାକୁ ସେଇ କଥା ହେବ ।

ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରରେ ପ୍ରଥମେ ନେତା ମନ୍ତ୍ରୀ ଓ ଉଚ୍ଚପଦସ୍ଥ କର୍ମଚାରୀମାନେ ସ୍ୱାସ୍ଥ୍ୟ ପରୀକ୍ଷା କରି ଆରୋଗ୍ୟ ଲାଭ କଲେ ସର୍ବସାଧାରଣଙ୍କର ଆପେ ବିଶ୍ୱାସ ଆସିଯିବ ଓ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରର ଅବସ୍ଥା କେବେ ରୁଗ୍ଣ ଓ ଶୋଚନୀୟ ହୋଇ ରହିବ ନାହିଁ । ସ୍ୱାସ୍ଥ୍ୟ କେନ୍ଦ୍ରରେ ଉଚ୍ଚପଦସ୍ଥ ବ୍ୟକ୍ତିମାନେ ଓ ତାଙ୍କ ପରିବାରବର୍ଗ ପ୍ରଥମେ ଆରୋଗ୍ୟ ହେଲେ ସର୍ବ-ସାଧାରଣଙ୍କର ବିଶ୍ୱାସ ହେବ ଯେ ସେଠାରେ ରୋଗ ଭଲହୁଏ । ଏପରି କରି କାର୍ଯ୍ୟରେ ଦେଖାଇ ଦେଲେ, ଭାଷଣ ଜରିଆରେ ଗର୍ଜନ ତର୍ଜନ କରି ସ୍ୱାସ୍ଥ୍ୟ କେନ୍ଦ୍ରର ଆବଶ୍ୟକତା ପ୍ରତିପାଦନ କରିବାକୁ ପଡ଼ିବ ନାହିଁ ।

## ପୌର ସଂସ୍ଥାର ଦାୟିତ୍ୱ

ଏବେ ପୌର ସଂସ୍ଥାର ଦାୟିତ୍ୱ ଓ କର୍ତ୍ତବ୍ୟ କଥା ବିଚାର କରିବା । ନଗର ବା ସହରର ଯାବତୀୟ ହିତ ବା ମଙ୍ଗଳ ଉଦ୍ଦେଶ୍ୟରେ ଏ ସଂସ୍ଥା ତାହାର କାର୍ଯ୍ୟକ୍ରମ ପ୍ରସ୍ତୁତ କରିଥାଏ । ସହରର ଶିକ୍ଷା, ସ୍ୱାସ୍ଥ୍ୟ, ବ୍ୟବସାୟ ବାଣିଜ୍ୟ, ଯାତାୟାତ ଇତ୍ୟାଦି କେତେକାଂଶରେ ଏହାର କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ । ଜନସ୍ୱାସ୍ଥ୍ୟ ଇଂଜିନିୟରିଂ ବିଭାଗ ସହିତ ସମନ୍ୱୟ ରକ୍ଷାକରି ପୌରସଂସ୍ଥା ଦେଖିବା ଉଚିତ ଯେ ସହରାଞ୍ଚଳରେ ଜଳଯୋଗାଣରେ ବ୍ୟତିକ୍ରମ ହେବନାହିଁ । ପାନୀୟଜଳ ଉପଯୁକ୍ତ ରାସାୟନିକ ପଦ୍ଧତିରେ ଜୀବାଣୁମୁକ୍ତ ହୋଇ-ଥିବା ଦରକାର। ନହେଲେ ଦୂଷିତ ଜଳପାନ ହେତୁ ଆନ୍ତ୍ରିକଜ୍ୱର, କାମଳ, ଆମାଶୟ, ଡାଇରିଆ ଆଦି ଯେ କୌଣସି ସମୟରେ ମହାମାରୀ ଆକାର ଧାରଣ କରିପାରେ । ନାଳ ନର୍ଦ୍ଦମା ସଫେଇ, ଆବର୍ଜନା ବିଶୋଧନ, କୂପ ପୋଖରୀ ବିଶୋଧନ, ଭୂତଳ ନଳା ନିଷ୍କାସନ, ଶବସତ୍କାରର ଉପଯୁକ୍ତ ବ୍ୟବସ୍ଥା ଆଦିରେ ଜନସ୍ୱାସ୍ଥ୍ୟ ସଂସ୍ଥା ଓ ପୌର ସଂସ୍ଥାର ସମନ୍ୱିତ ସହଯୋଗ

ଏକାନ୍ତ ଆବଶ୍ୟକ । ଏହାଛଡ଼ା ସହରରେ ସାମାଜିକ ସ୍ୱାସ୍ଥ୍ୟ ସଂରକ୍ଷଣ ବ୍ୟବସ୍ଥା, ମାତୃମଙ୍ଗଳ ଓ ଶିଶୁ ପ୍ରସବ କେନ୍ଦ୍ର, କ୍ରୀଡ଼ା ଓ ଅବସର ବିନୋଦନ କେନ୍ଦ୍ର ସୁପରିକଳ୍ପିତ ହେଉଥିବା ଉଚିତ । ବସ୍ତି ଅଞ୍ଚଳରେ ଯେଉଁମାନେ ପୁରୁଷ ପୁରୁଷ ଧରି ରହିଲେଣି ସେମାନଙ୍କୁ ଚିହ୍ନଟ କରି ସେମାନଙ୍କ ପାଇଁ ଉପଯୁକ୍ତ ଥଇଥାନ ବ୍ୟବସ୍ଥା ସହର କର୍ତ୍ତୃପକ୍ଷଙ୍କର ଏକାନ୍ତ କର୍ତ୍ତବ୍ୟ । ବିଶେଷତଃ ସହରର ଉନ୍ନତିମୂଳକ କାର୍ଯ୍ୟରେ ଯେଉଁ ଅସ୍ଥାୟୀ ଶ୍ରମିକମାନେ ଭାଗ ନିଅନ୍ତି । ସେମାନଙ୍କ ଆଶ୍ରୟ ପାଇଁ ଶସ୍ତା ଭଡ଼ାରେ ଧର୍ମଶାଳା ସଦୃଶ ବାସଗୃହ ନିର୍ମିତ ହେବା ଉଚିତ ।

## ପଦ୍ମ ଘୁଞ୍ଚୁଛି

ସହରଠାରୁ ବସ୍ତିକୁ ଅଲଗା କରି କୌଣସି ଯୋଜନା କଲେ ତାହା ଭ୍ରୁଷ୍ଟ ପଡ଼ିବ । ବିଶେଷତଃ ଏହି ସ୍ୱାସ୍ଥ୍ୟ ଯୋଜନା ଏକାଠି କରାଯିବା ଉଚିତ । ସହରର ହାକିମ ହୁକୁମା ବସ୍ତିକୁ ନଗଲେ ବସ୍ତି ବାସିନ୍ଦାମାନେ ଚଳିପିବେ କିନ୍ତୁ ବସ୍ତି ବାସିନ୍ଦାଙ୍କୁ ବାଦ କଲେ ସହର ଅଚଳ ହୋଇଯିବ । ତେଣୁ ସହରର ସୌନ୍ଦର୍ଯ୍ୟ ବୃଦ୍ଧି ପାଇଁ ଝୁମ୍ପୁଡ଼ି ଉପରେ ବୁଲଡୋଜର ଚଳାଇ ହେବ ନାହିଁ । ବସ୍ତିବାଲଙ୍କ ପାଇଁ ଏକ ଯୋଜନା କରିବାକୁ ହେବ । ପ୍ରକୃତରେ ସହର ସମସ୍ୟା ଆଜି ବସ୍ତିର ସମସ୍ୟା । ଏଥିରେ ପୌର ସଂସ୍ଥା, ଜନସ୍ୱାସ୍ଥ୍ୟ ଇଂଜିନିୟରିଂ ସଂସ୍ଥା ଓ ସର୍ବସାଧାରଣ ସ୍ୱାସ୍ଥ୍ୟ ସଂସ୍ଥାର ସମନ୍ୱିତ ପ୍ରଚେଷ୍ଟା ଦରକାର ।

ଏମାନେ ଯେ ଏବେ ପୂରାପୂରି ନିଶ୍ଚିନ୍ତ ହୋଇ ନାକରେ ତେଲ ଦେଇ ଶୋଇଛନ୍ତି, ତାହାନୁହେଁ । କିଛି କିଛି କରୁଛନ୍ତି, ଯେତିକି କଲେ ଗୁଳକରି ରହିଥିବ, ନିଜ ଉପରକୁ ଆଞ୍ଚ ନଆସିବ, ସେତିକି କରୁଛନ୍ତି । ଖାସି ମାଂସରେ ମୋହର ମାରୁଛନ୍ତି, କେବେ କେମିତି ବାସି ବରା ଗୁଲୁଗୁଲା ଫିଙ୍ଗି ଦେଉଛନ୍ତି । ମଝିରେ ମଝିରେ ଫଳ ପରିବା କହି ଦୋକାନୀଙ୍କୁ ଧମକାଇ ଦେଉଛନ୍ତି । ଝାଡ଼ାହେବା ଖବର ସମ୍ବାଦ ପତ୍ରରେ ଛପା ହେଲେ ହଇଜା ଇଂଜେକ୍ସନ ଦେଇ ଦେଉଛନ୍ତି । ପ୍ରକୃତରେ ଏମାନେ ଶୁଖିଲା ବାଟରେ ଚାଲୁଛନ୍ତି, କାଦୁଅକୁ ପଶୁ ନାହାନ୍ତି । କି ଗୋଡ଼ ଧୋଉ ନାହାନ୍ତି । ଲକ୍ଷ୍ୟ

ନିକଟରେ ପହଞ୍ଚିବାକୁ ଏମାନଙ୍କର ସମୟସୀମା ନାହିଁ । ତେଣୁ ପଦ୍ମ ଘୁଞ୍ଚି ଘୁଞ୍ଚି ଯାଉଛି । ଏପରି ହେଲେ, "ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟ" କେବଳ ସ୍ୱପ୍ନ ହୋଇ ରହିଯିବ ।

ଏ ଦେଶରେ ଯୋଜନା ପଣ୍ଡିତଙ୍କର ଅଭାବ ନାହିଁ । ଯୋଜନାଗୁଡ଼ିକ ଅତି ଚମତ୍କାର । କିନ୍ତୁ ସେଗୁଡ଼ିକର ଗତି ମନ୍ଥର, ସମୟସୀମା ମଧ୍ୟରେ ସେଗୁଡ଼ିକ କାର୍ଯ୍ୟକାରୀ ହୋଇପାରୁ ନାହିଁ । ମନେହୁଏ, ଯେଉଁମାନେ କାର୍ଯ୍ୟକାରୀ କରୁଛନ୍ତି ସେମାନେ ଷାତମ୍ପୃହ ହୋଇ ପଡ଼ୁଛନ୍ତି, ସେମାନଙ୍କ ମଧ୍ୟରେ ନିଷ୍ଠା ଓ ଆନ୍ତରିକତାର ଅଭାବ ଦେଖା ଦେଉଛି । ଏଥିପାଇଁ ଯେଉଁ ବଳିଷ୍ଠ ପ୍ରେରଣା ଦରକାର ତାହା ଆସିବ କେଉଁଠୁ ? କିଏ ଦେବ ସେହି ପ୍ରେରଣା ? ତାହା ହିଁ ଆଜି ଏ ଦେଶପାଇଁ ଏକ କଠିନ ପ୍ରଶ୍ନ ।



# 'ରେମି'ର କାହାଣୀ

'ରେମି' ଗୋଟିଏ ପୋଷା କୁକୁର । ତାକୁ କାହିଁକି ଓ କପରି 'ରେମି' ଡକା ହୋଇଥିଲା, ତାହା ମୋର ଠିକ୍ ମନେ ନାହିଁ । ତେବେ ରେମ ସହିତ ତା'ର କୌଣସି ସମ୍ପର୍କ ନ ଥିଲା କି ତା ଦେହରେ ଯେପରି କିଛି ଗୁଡ଼ିଏ ରୁମ ନ ଥିଲା । ତେବେ ଯାହା ମନେପଡ଼େ, ସେମିତି କୌଣସି ଅର୍ଥରେ ତାକୁ ରେମି ଡକା ହୋଇ ନ ଥିଲା । ମୋର ସାନ ପୁଅ ତାକୁ ପ୍ରଥମେ ରେମି ଡାକିଲା । ପରେ ଆମେ ସମସ୍ତେ ତାକୁ ସେଇ ନାଁରେ ଡାକିଲୁ ।

କୁକୁରମାନଙ୍କ ସମ୍ବନ୍ଧରେ ତ ଅନେକ ଚମତ୍କାର ସତକଥା ଶୁଣାଯାଏ । ଦୁନିଆରେ ଅତି ବିଶ୍ୱାସୀ ବନ୍ଧୁ ଯଦି କେହି ଥାଏ, ସେ ହେଉଛି ପୋଷା କୁକୁର । ଅନ୍ଧ ମୁନିବକୁ ସେ ବାଟ କଢ଼ାଏ, ହଜିଲା ଜିନିଷ ଖୋଜି ଆଣି ଦିଏ, ଅଚିହ୍ନା ଲୋକକୁ ପିଣ୍ଡା ମଡ଼େଇ ଦିଏ ନାହିଁ । ନିଜ ଜୀବନକୁ ପାଣି ଛଡ଼ାଇ ପ୍ରଭୁ ପାଇଁ ସେ ପାଣିକୁ ଡେଏଁ । ଘରେ କିଏ ଜର ବାଧକାରେ ପଡ଼ି ଶୋଇ ରହିଲେ ସେ ପାଖରେ ଜଗି ଶୁଏ । ଦୈବାତ୍ ସାପଟାଏ କି ମୂଷାଟାଏ ଯଦି ଘରେ ପଶେ' ସେ ଭୁକି ଅଥୟ କରେ । ମୁନିବ ପଦାକୁ ଗୋଡ଼ କାଢ଼ିଲେ ତାଙ୍କ ଫେରିବା ବାଟକୁ ଅନେଇ ବସିଥାଏ । ଜଣା ପଡ଼ୁଛି ଯେ, କେହି ଯଦି ତା' ମୁନିବକୁ ହତ୍ୟାକରି ମାଟିରେ ପୋତିଦିଏ, ସେ ଯାଇ ଥାନା ବାବୁଙ୍କୁ ଜଣାଇ ଦିଏ । ଏମିତି କେତେ ନା କେତେ କାହାଣୀ ମୁଁ ଶୁଣିଥିଲି ଓ ପଢ଼ିଥିଲି ।

କିନ୍ତୁ କୁକୁର ସମ୍ବନ୍ଧରେ ଏସବୁ ଗପ ଜାଣିବା ଆଗରୁ ମୁଁ ପିଲାବେଳେ ମଧ୍ୟ କୁକୁର ଛୁଆଗୁଡ଼ିକୁ ଭାରି ଭଲ ପାଉଥିଲି । ଅବଶ୍ୟ ସବୁ ପିଲାଏ ଏମିତି । ସେମାନେ ବାଟରେ ଫୁଲୁକା ଫୁଲୁକା କୁକୁର ଛୁଆଗୁଡ଼ିକୁ ଦେଖିଲେ

କିଛି ସମୟ ଅଟକିଯାନ୍ତି । ମୋଟା ମୋଟା ହୋଇ ସେଗୁଡ଼ାକ ଟିକିଟିକିଂ ଗୋଡ଼ରେ ଦୌଡ଼ୁଥାନ୍ତି । ତା'ଛଡ଼ା ମଣିଷ ମନ୍ଦରେ ଗୋଡ଼େଇବା'କୁ ସେମାନେ ଜିଦ୍ ଧରନ୍ତି । ସତେ ଯେମିତି ମଣିଷର ପୋଷା ମାନିବାକୁ ପ୍ରକୃତି ଗଢ଼ିଛି । ଅନ୍ୟ ପଶୁପକ୍ଷୀଙ୍କ ଛୁଆ ପ୍ରାଣ ବିକଳରେ ଦୂରକୁ ପଳାଉଥିଲାବେଳେ ବାଟବଣା ହୋଇ କୁକୁର ଛୁଆ ପ୍ରାଣ ବଞ୍ଚାଇବା ପାଇଁ ମଣିଷ ପାଖକୁ ଲାଗିଆସେ ।

ଏଥିରେ ପିଲାଙ୍କର ଆନନ୍ଦ ଦେଖେ କିଏ ? ମହା ଖୁସିରେ ସେମାନେ ଏକାବେଳେ ଗୃହ ପାଞ୍ଚଟି ଧରି ହାଣ୍ଡି ତଳେ, ବାକ୍ସ ଭିତରେ, କୁଟାଗଦା ବା ଭାଡ଼ିତଳେ ଲୁଚନ୍ତି । ତା'ପରେ ହନହାକ "ତୁତୁ, ଆଆ, ତୁତୁ" କହି ମୁନିବସାଜି ସେଗୁଡ଼ାକୁ ପଛରେ ଦୌଡ଼ାନ୍ତି । କିନ୍ତୁ ଠିକ୍ ରାତି ହେଲେ କାଳ ଆସେ । ହନଟାହାକର ମଜା ମଉଜ ରାତିକୁ ବାହାରେ । ଛୁଆଗୁଡ଼ାକର ଆହାର ହେଲା ମାଆ କ୍ଷୀର । ସେମା'ନେ ତ ଭାତ ଡାଲି ଖାଇ ଶିଖି ନଥାନ୍ତି । କି ଗିନାରୁ କ୍ଷୀର ପିଇଶିଖି ନଥାନ୍ତି ହନହାର ଦୌଡ଼ ଦୌଡ଼ ହାଲିଆ ହୋଇଥାନ୍ତି । ପେଟ ଖାଲି ହେଲା ବେଳକୁ କାଉଁ କାଉଁ ହୋଇ ମାଆକୁ ଖୋଜନ୍ତି । ପେଟ ବିକଳରେ ସେମାନେ ଯେଉଁ ରଡ଼ି ଛାଡ଼ନ୍ତି, ସେଥିରେ କିଏ ବା ଶୋଇବ ? ରାତିର ଏ ଅନିଦ୍ରା ପାଳି ପରେ ସକାଳୁ ତାଙ୍କୁ ମୁକ୍ତି ମିଳେ ।

କିନ୍ତୁ ରେମି ଯେତେବେଳେ ଆମ ଘରକୁ ଆସିଥିଲା ସେତେବେଳେ କେଇ ତାକୁ ଲୁଚାଇ ଆଣି ନ ଥିଲା । ତାକୁ ଆଣିବା ପାଇଁ ସ୍ୱତମୁତାବକ ଏକ ବରହଆ ମନ୍ତ୍ରଣା ବୈଠକ ବସିଥିଲା । ସାନ ଝିଅ ଏକ ପ୍ରସ୍ତାବ ଦେଲା— "ମାମୁଁ ତାଙ୍କ ବସାକୁ ଦୁଇଟି କୁକୁର ଛୁଆ ଆଣିଛନ୍ତି । ସେଗୁଡ଼ିକ ମିଶା ନେପାଳୀ । ଭଲ ପୋଷା ମାନିବେ ଓ ଘର ଜଗିବେ । ସେଥିରୁ ଗୋଟିଏ ଆଣିଲେ ସାନଭାଇ ପାଳନ୍ତା । ତାହାହେଲେ ବୁଲା କୁକୁର ଛୁଆଙ୍କୁ ଆଣି ଘରେ ପୂରନ୍ତା ନାହିଁ ।" ତା'ର ଏ ପ୍ରସ୍ତାବଟି ଅତି ଯୁକ୍ତିଯୁକ୍ତ ଓ ଟାଣୁଆ ଥିଲା । ପ୍ରସ୍ତାବ ଗୋଟିଏ ହେଲେ ମଧ୍ୟ ଏଥିରେ ବହୁମୁଖୀ ଯୋଜନା ଉଙ୍କି ମାରୁଥିଲା । ସାନ ଭାଇର ସନ୍ତୋଷ ବିଧାନ, ବୁଲା କୁକୁର ଛୁଆଙ୍କର ଦୌରାତ୍ମ୍ୟ ଦୂରୀକରଣ, ଗୃହ ନିରାପତ୍ତା, ଚୌର ଉପଦ୍ରବ ହ୍ରାସରେ ଜଟିଳ

ସମସ୍ୟାର ସରଳ ସମାଧାନ ସେ କରି ପାରିଥିଲା । ସାନ ପୁଅ ସଙ୍ଗେ ସଙ୍ଗେ ତା' ପାଳି ଧରିଲା । କିନ୍ତୁ ଏସବୁ ଶୁଣି କାନଫଟା କର୍କଶ ସ୍ୱରରେ ଚିତ୍କାର କରି ଉଠିଲେ ତାଙ୍କ ସୁଗୃହିଣୀ ମାଆ । ତାଙ୍କ ଯୁକ୍ତି ବି ମନ୍ଦ ନ ଥିଲା । ସେ ଆପତ୍ତି କରି କହିଲେ, ପ୍ରସ୍ତାବରେ କେବଳ ତାଙ୍କରି ଉପରକୁ କାମ ମାଡ଼ି ଆସୁଛି । ଗୁରି ଗୁରିଟି ପିଲାଙ୍କର ଗୁହ ମୁତ ପୋଛୁ ପୋଛୁ ଟିକିଏ ବିଶ୍ରାମ ନେଲା ବେଳକୁ ପୁଣି କୁକୁର ବେପାର ଆରମ୍ଭ ହୋଇଯିବ । ସେ ଏତେ ସେବା କରିପାରିବେ ନାହିଁ ।

ସେତେବେଳକୁ ଟେଣ୍ଟ ଟେଣ୍ଟ ପିଲାମାନେ ଦବି ଗଲେଣି । ସେମାନେ ଆସ୍ତେ ଆସ୍ତେ କହୁଥାନ୍ତି ଯେ, ସେମାନେ ନିଜେ ସବୁ କରିବେ । ତଥାପି ମାଆ ଜିଦ୍ ଧରିଥାନ୍ତି ଯେ, ସେସବୁ କେବଳ ପେଟିଗିନା; ପହିଲୁ ପହିଲୁ ଏପରି ହୋଇପାରେ, ଶେଷରେ ଗଡ଼ି ଗଡ଼ି ସେଇ କାମସବୁ କେବଳ ତାଙ୍କ ଉପରକୁ ଆସିବ । ତାହା ହୋଇ ପାରିବ ନାହିଁ । ପିଲାମାନେ ନିରାଶ ହେବା ଉପରେ । ଏମିତି ସେଦିନ କୁକୁର ପୋଷିବା ଆଲୋଚନାଟା ହଠାତ୍ ମିଳେଇ ଯିବାକୁ ବସିଲା ।

ଠିକ୍ ସହରରେ ବିଜୁଳି ବତି ଲିଭିଲା ବେଳକୁ ମହମବତି ଯେମିତି ଜଳି ଉଠେ, ପ୍ରକାଶ ପିଲା ଗଙ୍ଗାଧର ପହଞ୍ଚି ସ୍ୱେଚ୍ଛା ସେବକ ହେବାକୁ ଅଗେଇ ଆସିଲା । ସେ ଗାଁରୁ ଆସିଥିଲା । ମାଙ୍କଡ଼କୁ ଢେଲା ମାରିବା, ପାଣିରେ ବୁଡ଼ି ଓଧଡ଼ରେ ମାଛ ଅଣ୍ଡାଳିବା, କୁକୁର ଲାଙ୍ଗୁଡ଼କୁ ସିଧା କରିବା ଥିଲା ତା'ର ସଉକ । ଏବେ ରାଜଧାନୀରେ ବାନ୍ଧୁଣିଆ ହୋଇଥିବାରୁ ତାକୁ ସେ ସୁଯୋଗ ଜୁଟୁ ନଥିଲା । ଏଭଳି ଏକ ଅପୂର୍ବ ସୁଯୋଗ ଛାଡ଼େ କିଏ ? କୁକୁର ଛୁଆର ଯାବତୀୟ ସେବାଯତ୍ନ କରିବାକୁ ସେ ଆଗଭର ହୋଇ ଉଠିଲା । ପିଲାଙ୍କର ଆନନ୍ଦ ଦେଖେ କିଏ ? ସେମାନେ ସବୁ ମୋତେ ଅଟେଇ ରହିଲେ । ମୁଁ 'ହଁ' ମାରିବାକୁ ବାଧ ହେଲି । ସେଇ ସନ୍ଧ୍ୟାରେ ସାନ ପୁଅ ଓ ଗଙ୍ଗାଧର ଧାଇଁଲେ ମାମୁଁଙ୍କ ବସାକୁ । "କାଲି ସକାଳେ ଯିବ" ବୋଲି ମାଆ ପଛରୁ ପାଟି କରୁଥାନ୍ତି । ଏତେ ବଡ଼ ଘଟଣା ଯାବା ଅପେକ୍ଷା କରିବ କିଏ ?

ରାତି ସେତେବେଳକୁ ଆଠଟା ହେଲାଣି । ଧଇଁ ସଇଁ ହୋଇ ହରିଣପାଳ କୁକୁର ଛୁଆକୁ କାଖେଇ ଘରେ ପହଞ୍ଚିଲେ । ଛୁଆଟିର ଜୀବନ

ଯିବା ଉପରେ । ପ୍ରତିବାଦ କରିବାକୁ ତା'ର ବଳ ନ ଥାଏ । ତାହା ହାଡ଼କୁ କେବଳ ଚମ ଯାହା ଘେରିଛି । ଦେହରେ ଗୋଟିଏ ବୋଲ ରୁମ ନ ଥାଏ । ତଥାପି ତାକୁ 'ହେମି' ବୋଲ ସାନପୁଅ ହରି ଛାଡ଼ୁଥାଏ । ତା' ନାଁଟି ବୋଧହୁଏ ଆଗରୁ ଠିକଣା ହୋଇଥିଲା ।

ପରଦିନ ସକାଳୁ ଗଙ୍ଗାଧର ତାକୁ ସାଇକେଲରେ ବସାଇ ପଶୁ ଡାକ୍ତରଖାନାକୁ ବାହାରିଲା । ଗଙ୍ଗାଧରକୁ ଲାଜ ମାଡୁଥାଏ, ବାଟରେ କାଳେ କିଏ ଦେଖିବ । ସତକୁ ସତ ବାଟରେ ତାକୁ ଯିଏ ଦେଖିଲା ହସିଲା । କିନ୍ତୁ ପଶୁ ଡାକ୍ତର ଯାହା କହିଲେ, ସେଥିରେ ସମସ୍ତେ ଟିକିଏ ଖୁସି ହେଲେ । ତା' ମୁହଁ ପାଖ କଳା, ଲାଞ୍ଜ ଲମ୍ବା, ସେ ଗୋଟିଏ ଜାତିଆ କୁକୁର । ତା'ପାଇଁ ଭିଟାମିନ ବଟିକା ଓ ଇଞ୍ଜେକସନ ଦେବାର ବ୍ୟବସ୍ଥା ହେଲା । ସମସ୍ତେ ତା' ସେବା ଯତ୍ନରେ ଲାଗି ପଡ଼ିଲେ ।

ଚେଣିକ ପ୍ରତିଦିନ ଘରକୁ ଫେରିଲା ବେଳକୁ ହେମିର ବାହାଦୁରି ବିଷୟରେ କିଛି ହେଲେ ଗୋଟିଏ କଥା ଶୁଣିବାକୁ ମିଳିଲା । ଯଥା···ଭିକାରି ଫାଟକ ଖୋଲିବାରୁ ସେ ଭୁକିଲା, ତାକୁ ଚରିଣ୍ଡା କ ଖାଡ଼ା ତଲବ ହେଲେ ସେ ବାହାରକୁ ଯିବାକୁ ଭାବୁଛି, କାଠ କ ବଳ ଫୋପାଡ଼ ଦେଲେ ସେ ତାକୁ ଗୋଟାଇ ଆଣିଦେଉଛି । ଘରକୁ ନୂଆ କୁଣିଆ ଆସିଲେ ସେ ଦ୍ୱାରଗୋଡ଼ରେ ଠିଆ ହୋଇ ତାଙ୍କୁ ଡରାଉଛି । ତା' ଗିନାରେ ଖାଇବାକୁ ନ ଦେଲେ ଅନ୍ୟ କେଉଁଥିରେ ଦେଲେ ସେ ତାକୁ ଛୁଇଁ ନାହିଁ । ଏମିତି ଆହୁରି ଅନେକ କଥା ।

କିଛି ଦିନ ପରେ ଆସିଲା ଆମ ବଦଳି. ତିନିଶ କିଲୋମିଟର ଦୂର ସମ୍ବଲପୁରକୁ । ପିଲଙ୍କର ଏକାଜିଦ, ହେମି ସଙ୍ଗରେ ଯିବ । ହେମିର ଗୁଣ ପାଇଁ ପଡ଼ୋଶୀମାନେ ତାକୁ ରଖିବାକୁ ରାଜି ହୋଇ ଗଲେଣି । କାରଣ ସେମାନେ ସ୍ୱଚକ୍ଷୁରେ ଦେଖିଲେ, ସେଦିନ ଚୋରମାନେ ତମ୍ବା ତାର କାଟୁଥିଲାବେଳେ ହେମି କେବଳ ଭୁକିବାରୁ ସେମାନେ ଛାଡ଼ ପଳାଇଲେ, କିନ୍ତୁ ଦରମା ପାଇ ଯେଉଁ ବାହାଦୂର ରାତିରେ କାଡି ଧରି ବୁଲିବା କଥା ସେ କିଦକରେ କିଦରେ ଶୋଇଥିଲା । ଏଣେ ଆଶ୍ଚର୍ଯ୍ୟ ବିହାର ମାମୁଁ ଆଗେଇ

ଆସିଲେ ତାଙ୍କ ରେମିକୁ ଫେରାଇ ନେବାକୁ । ମୁଁ ଟିକଏ ଆଶ୍ୱସ୍ତ ହେଲି । ଯାହାହେଉ ସବୃଷ୍ଣା ରେମି ଆମକୁ ଆଉ ଝୁରିବ ନାହିଁ । ତା'ର କଣ୍ଟ ଗୋଟିଏ ବନ୍ଦୋବସ୍ତ ହୋଇଗଲା । ସାନପୁଅ କାନ୍ଦ କାନ୍ଦ ହୋଇ ପ୍ରତିଦିନ ତାକୁ ବୁଝାବୁଝି କରୁଥାଏ, "ଏତେ ବାଟକୁ ତୋତେ ନେଇ ହେବ ନା ଲୋ ରେମି, ତୁ ଏଇଠି ଥା । ମଝିରେ ମଝିରେ ଆମେ ଆସିବୁ ଯେ; ତୋତେ ଦେଖିଯିବୁ ।" ସେ ସବୁ କଥା ରେମି ବୁଝେ କି ନାହିଁ ଜଣା ପଡ଼େନା । କିନ୍ତୁ ରେମି କାନ୍ଦୁଛି ବୋଲି ସେ କାନ୍ଦ ପକାଏ ।

ରେମି ରାଜଧାନୀରେ ରହିଲା । ଆମେ ସମ୍ବଲପୁର ଆସିଲୁ । ବହୁଦିନ ପର୍ଯ୍ୟନ୍ତ ରେମି କଥା ଆମ ଘରେ ଚର୍ଚ୍ଚା ହେଲା । ମାଆ ଓ ପିଲାମାନେ ସମସ୍ତେ ବ୍ୟସ୍ତ ହେଉଥାନ୍ତି । ସେ ତାକୁ ଟ୍ରକରେ ଅଣା ଯାଇ ପାରିଥାନ୍ତା । ଚାହାଁ ଲୋକଙ୍କ ପାଖକୁ ଚିଠି ଦେଲାବେଳେ ରେମି କଥା ଲେଖା ହେଉଥାଏ; ରାଜଧାନୀରୁ କିଏ ଆସିଲେ ତା'ଠାରୁ ଅନ୍ୟ ଖବର ସଙ୍ଗେ ରେମି ଖବର ବୁଝାଯାଏ । ଆସ୍ତେ ଆସ୍ତେ ଆମେ ତାକୁ ଭୁଲି ବସିଲୁ । ଆଉ ଗୋଟିଏ ସୁନ୍ଦରିଆ କୁକୁର ରଖିଲୁ । ରେମି ଭୁଲି ହୋଇଗଲା ।

ଦୁଇବର୍ଷ ପରେ ମୁଁ ଆର୍ଯ୍ୟବିହାର ଯାଇଥାଏ । ମାମୁଁଙ୍କ ବସାବାଟ ଦେଇ ଜଣେ ବନ୍ଧୁଙ୍କ ଘରକୁ ଯାଉଥାଏ । ଟିକଏ ଅନ୍ୟମନସ୍କ ହୋଇ ଚାଲୁଛି । ହଠାତ୍ ପଛରୁ କିଏ ଆସି ମୋ ପିଠିକୁ ଖେଞ୍ଚ ଦେଲା । ଚମକ ପଡ଼ି ଅନେଇ ଦିଏ ତ ରେମି । ସେତେବେଳକୁ ସେ ବୁଲିପଡ଼ି ମୋ ଗୋଡ଼କୁ ଦୁହେଁ ଗୁଡ଼ି ପକାଇଲା । ତା'ର ସେତେବେଳର ସେ ଅଳି ଓ ଗୁହାରି ମୋର ମୃତ୍ତିକଣ୍ଠ ଥିବା ପର୍ଯ୍ୟନ୍ତ ମୁଁ ଭୁଲିପାରିବ ନାହିଁ । ପିଲବେଳେ ଯେମିତି କଣ୍ଢା ଓ ଚମ ଧରି ସେ ଆମ ଘରକୁ ଆସିଥିଲା, ଅଣହେଲାରେ ସେ ଠିକ୍ ସେମିତି ହୋଇ ଯାଇଥିଲା । ତା'ର ଦୀର୍ଘ କେଇଦିନର ସବୁ ଦୁଃଖ ସେ ଯେମିତି ମୋତେ ଏକାବେଳେ କହି ପକାଇବାକୁ ବସିଛି । ସେଇଠି ପଛକୁ ଫେରି ମୁଁ ମାମୁଁଙ୍କ ବସାକୁ ଗଲି । ରେମି ବାହାରେ ଅନେଇ ରହିଲା । ତାଙ୍କ ଘରୁ ଶୁଣିଲି, ରେମି କଥା ନ ମାନିବାରୁ ତାକୁ ଅନେକଦିନୁ ତଡ଼ି ଦିଆଯାଇଛି । ସେଥିରେ ରେମିର ବା ଦୋଷ କ'ଣ ? ତାହା ସମସ୍ତ କୁକୁର ଜାତିର ଦୋଷ । କୁକୁର କୃତଜ୍ଞ; ପୋଷା ହେଲେ କେବଳ କେତେଜଣଙ୍କ

କଥା ସେ ମାନେ । କାଲିକା ଲାଭ କଥା ବିଗୁର କରି ସେ ଛଳନା କରି ଜାଣେନା । ଅତୀତକୁ ସେ ସହଜରେ ଭୁଲି ପାରେନା । ଆମକୁ ମନେ ପକାଇ ତା'ର ଏ ଦଶା ।

ବହୁ ସମୟ ଗପସପ ହେଲାପରେ ତାଙ୍କ ଘରୁ ବାହାରିଲି । ସେ ବାହାରେ କେଉଁଠି ଲୁଚିବସି ମୋତେ ଅପେକ୍ଷା କରିଥିଲା । ମୋ ପିଚ୍ଛା ଧରି ପୁଣି ଗୋଡ଼େଇଲା । ମୁଁ ତାକୁ ଟେକା ଫୋପାଡ଼ି ତଡ଼ିଲି । ମୋ ଟେକା ତା'ଠାରେ ବାଜିବ ନାହିଁ ବୋଲି ସେ ଜାଣିଥିଲା । ମୋଠାରୁ ଦୁରେଇ ଦୂରେଇ ସେମିତି ମୋ ପଛରେ ଚାଲିଲା । ପ୍ରାୟ ଦୁଇ କିଲୋମିଟର । ବୁଲା କୁକୁରମାନେ ଭୁକି ଭୁକି ତାକୁ କାମୁଡ଼ିବାକୁ ଗୋଡ଼ାଉଥାନ୍ତି । ସେ ମୋ ଆଶ୍ରା ପାଇ ନିର୍ଭୟରେ ଧାଉଁଥାଏ । ମୁଁ ତରବରରେ ବିଶ୍ୱବିଦ୍ୟାଳୟ ଅଫିସ ଭିତରେ ପଶିଗଲି । ଏଇ ଚାରିବର୍ଷ ଭିତରେ ସେତେବେଳକୁ କେତେକ ପିଅନ ବାବୁ ହେଲେଣି । ଗ୍ରେଡ଼ ବାବୁମାନେ ବଡ଼ ବାବୁ ହେଲେଣି । ସେମାନଙ୍କ ମଧ୍ୟରୁ କେତେକ ମୋତେ ନ ଚିହ୍ନିଲା ପରି ଚାଲି ଯାଉଥିଲେ । ବିଶେଷତଃ ମୁଁ ଯେଉଁମାନଙ୍କୁ ସାହାଯ୍ୟ କରିଥିଲି କାଳେ ସେମାନଙ୍କୁ କ'ଣ କାମ କରିବାକୁ ପଡ଼ିବ, ସେଥିପାଇଁ ସେମାନେ ପିଠି ଆଡ଼େଇ ଚାଲି ଯାଉଥିଲେ । ଜଣେ ଚିହ୍ନା ପିଅନକୁ ଡାକି ମୁଁ ତାକୁ ଗୋଟିଏ ପାଉଁରୁଟି କିଣି ଆଣିବାକୁ କହିଲି । ମୋଠାରୁ ସବୁ କଥା ଶୁଣି ପିଅନଟି କାବା ହୋଇଗଲା । ଟେମିକୁ ଖିଆଇ ଦେବାକୁ ଆସି ଦେଖେତ ସେ ଆଉ ସେଠି ନଥିଲା । ସେ ବୋଧହୁଏ ବୁଝି ପାରିଥିଲା ଯେ ତା'ର ମୁନିବ ତାକୁ ସଙ୍ଗରେ ନେବାକୁ ନାରାଜ । ଏଣିକି ଜଣକ ଉପରେ ନିର୍ଭର ନ କରିବା ଆଶା ନରଖି ତାକୁ ବାରଦ୍ୱାର ବୁଲିବାକୁ ହେବ । ଅନ୍ୟ କୁକୁରଙ୍କ କାମୁଡ଼ାରୁ ରକ୍ଷା ପାଇବା ପାଇଁ ତାକୁ କେବଳ ଏକୁଟିଆ ସଂଘର୍ଷ କରିବାକୁ ହେବ ।

ତା'ପରେ ଯେତେଥର ମୁଁ ବାଣୀବିହାର ଯାଇଛି, ସେଠାରେ କୁକୁରଟିଏ ଦେଖିଲେ ଟେମି ମନେପଡ଼େ । ସେ ଆମକୁ ଚାରିବର୍ଷ ମନେରଖି

ଝୁର ହେଉଥିଲା ତା' ପାଇଁ ଆଖିରୁ ଗୁହଟୋପା ଲୁହ ଆପେ ନିଗିଡ଼ ପଡ଼େ । ସତେ ଯେପରି ରାଜଧାନୀରେ ଜଣେ ନିଜର ଲୋକ କୁଆଡ଼େ ହଜିଗଲା । ସେ କିପରି ବୁଲି ବୁଲି ଖାଇବାକୁ ନପାଇ ଅନ୍ୟ କୁକୁରଙ୍କ କାମୁଡ଼ାରେ ମରିଥିବ, ସେ କଥା ଭାବିଲା ବେଳକୁ ନିଜକୁ ଅପରାଧୀ ମନେକରେ । ଯିଏ ସୁଖସୁବିଧା ପାଇଥାଏ, ତାକୁ ଅଭାବ ଅସୁବିଧା ବେଶୀ ବାଧେ । ରୋମିର କାହାଣୀ ସେଇଥିପାଇଁ କରୁଣ । ଇତର ପ୍ରାଣୀ ମଣିଷକୁ ଏମିତି ଝୁରି ହୁଏ ବୋଲି କ'ଣ ଏ ଯୁଗର ମଣିଷ ସହଜରେ ବିଶ୍ୱାସ କରିବ ?



# ଆଶାର କୁହୁକ

## ମୃତ୍ୟୁ ଆଖିଅରେ ଜୀବନ

ଏହା ଗୋଟିଏ ସତ ଘଟଣା; ଯୁକ୍ତରାଷ୍ଟ୍ର ଆମେରିକାରେ ଘଟିଯାଇଛି । ୧୯୭୧ ମସିହା ଫେବୃୟାରୀ ୧୨ ତାରିଖ । ଶୀତ ଦୂର ହୋଇ ନ ଥାଏ । ରାସ୍ତାରୁ ବରଫ ତରଳୁଥାଏ । ୫୩ ବର୍ଷ ବୟସର ଏଡ଼ ରବିନ୍‌ସନ୍ ତାଙ୍କ ଟ୍ରାକ୍ଟରରେ ଗୋଟିଏ ଟ୍ରେଲର ଲଗେଇ ଚଳଉଥିଲେ । ପାହାନ୍ତା ସମୟ । ତାଙ୍କ ଟ୍ରାକ୍ଟରରୁ ଆଗକୁ ଆଲୁଅ ପଡ଼ ରାଜପଥରେ ତରଳୁଥିବା ବରଫ ମନ୍ଦା ସବୁ ରୁପାପରି ଚକ୍‌ଚକ୍ ଦିଶୁଥିଲା । ତାଙ୍କ ଯାନଟି ବେଶ୍ ଓଜନିଆ ଥିଲା, ପ୍ରାୟ ୧୯ କୁଇଣ୍ଟାଲରୁ କମ୍ ହେବ ନାହିଁ । ଆଗରେ ଗୋଟିଏ ଓଭର ବ୍ରିଜ ପଡ଼ିଲା । ସାମନା ପଟୁ ମଟର ଗାଡ଼ିଟିଏ ଛୁଟି ଆସୁଥାଏ । ହଠାତ୍ କ'ଣ ହେଲା କେଜାଣି, ଗାଡ଼ିଟା ଚକ୍‌କରି ରାସ୍ତା କଡ଼କୁ ଖସିଗଲା । ରବିନ୍‌ସନ ଅନ୍ୟ ଉପାୟ ନ ଦେଖି ଡାହାଣ ପଟକୁ ତାଙ୍କ ଗାଡ଼ିକୁ ଆଖି ପିଛୁଳାକେ କଟାଇ ନେଲେ । ଆଶା କରିଥିଲେ, ଆସୁଥିବା ମଟରଗାଡ଼ି ଓ ପୋଲ ଧାର ମଝିରେ ଚପି ହୋଇ ସେ ଆଗକୁ ଚାଲିଯିବେ । ମଟର ଗାଡ଼ିଟା ମୁହାଁମୁହିଁ ଧକ୍‌କାରୁ ରକ୍ଷା ପାଇଯିବ ।

ପ୍ରକୃତରେ ମଟର ଗାଡ଼ିଟା ରକ୍ଷା ପାଇଗଲା, କିନ୍ତୁ ତାଙ୍କ ଟ୍ରାକ୍ଟରଟା ପୋଲ ବାଡ଼ ଡେଇଁ ଶୂନ୍ୟରେ ଝୁଲି ରହିଲା । ଯୋଗକୁ ଟ୍ରେଲରଟା ପୋଲରେ ଲାଗି ତାକୁ ଯାହା ଅଟକାଇଲା । ୧୨ ମିଟର ଉଚ୍ଚର ପୋଲ । ତଳେ ଆଉ ଗୋଟିଏ ରାଜପଥ । ସେଥିରେ ଗୁଡ଼ାଏ ଯାନବାହନ ଛୁଟିଥାଏ । ପୋଲରୁ ଝୁଲୁଥିବା ଟ୍ରାକ୍ଟରରେ ରବିନସନ । ସାକ୍ଷାତ ମୃତ୍ୟୁ ଆଖିଅରେ ଜୀବନ ! ସେତେବେଳକୁ କାଚରେ ପିଟିହୋଇ ରବିନ୍‌ସନଙ୍କ ମୁଣ୍ଡରୁ ରକ୍ତ

ଝର ଝର ବହିଲାଣି । ମୁହଁଟା ତଳେଜଲରେ ଜୁଡ଼ୁ ବୁଡ଼ୁ ହୋଇଗଲାଣି । ଏଥିରେ ଚେଷ୍ଟା ହରାଇବା କଥା । କିନ୍ତୁ ଷ୍ଟୁନିଆ ନ ହୋଇ ସେ କିମିତି ପଦାକୁ ଆସିବେ, ସେହି ଚିନ୍ତା କଲେ । ଖୁବ୍ ସତର୍କତାର ସହିତ ଝୁଲୁଥିବା ଚେପା ଟ୍ରାକ୍ଟରର ଦ୍ୱାର ଖୋଲି, ତାକୁ ଜାବୁଡ଼ି ଧରି ଧୀରେ ଧୀରେ ପୋଲ ଉପରକୁ ଉଠି ଆସିଲେ ।

## ଯମ ଦୁଆରୁ ଦୌଡ଼ା

ଆଉ ମୁହୂର୍ତ୍ତେ କାଳବିଳମ୍ବ ନ କରି ସେ ପାଖ ଡାକ୍ତରଖାନାକୁ ଧାଇଁଲେ । ମନରେ ତାଙ୍କର ଯମ ଦୁଆରୁ ଦୌଡ଼ ପଳାଇବାର ଆନନ୍ଦ । ଡାକ୍ତରମାନେ ତାଙ୍କ ଖଣ୍ଡିଆ ସ୍ଥାନସବୁକୁ ସଫା କରି ସିଲେଇ କରିଦେଲେ । ଏକ୍‌ସରେ ଫଟ ଉଠାଇଲେ ଓ ଔଷଧ ଲଗାଇ ଦେଲେ । କୁହାକୁହି ହେଉଥାନ୍ତି, "ବାଃ, ଲୋକଟା କେଡ଼େ ଭାଗ୍ୟବାନ, ଖୁବ୍ ଗୋଟାଏ ବଡ଼ ଦୁର୍ଘଟଣାରୁ କେବଳ ସାମାନ୍ୟ ଆଘାତ ପାଇ ବଞ୍ଚିଗଲା !" ସେତେବେଳକୁ ଦିନ ୧୧ଟା । ରବିନସନ୍ ବସରେ ତାଙ୍କ ଘରକୁ ଫେରିଗଲେ ।

ପୁଅ ବାହା ହୋଇ ଅନ୍ୟ ଜାଗାରେ ତା' ପିଲାପିଲି ଧରି ରହୁଛି । ଘରେ ତାଙ୍କର କେବଳ ସ୍ତ୍ରୀ ଡୋରିସ, ବୟସ ୩୨ ବର୍ଷ । ସେ ସ୍ୱାମୀଙ୍କ ଏଭଳି ଅବସ୍ଥା ଦେଖି ଈଶ୍ୱରଙ୍କୁ ଧନ୍ୟବାଦ ଦେଲେ । ପୂର୍ଣ୍ଣ ବିଶ୍ରାମ କଲେ ରବିନସନ୍ । ରାତିକୁ ଆରମ୍ଭ ହେଲା ଯନ୍ତ୍ରଣା । ସେ ଆଉ ଶୋଇବେ କ'ଣ ? ବିଛଣାରେ ବସି ଖାଲି ଧଇଁ ସଇଁ ହେଉଥାନ୍ତି । ସେମିତି ଉଜାଗର ରହି ପରଦିନ ସକାଳୁ ସେ ଜଣେ ସ୍ନାୟୁ ଡାକ୍ତରଙ୍କ ପାଖକୁ ଗଲେ । ଡୋରିସ ତାଙ୍କୁ ଧରାଧରି କରି ସଙ୍ଗରେ ନେଲେ । ଯନ୍ତ୍ରଣା ଜଣା ନ ପଡ଼ିବା ପାଇଁ ଡାକ୍ତର ତାଙ୍କୁ ଗୁଡ଼ାଏ ବଟିକା ଖାଇବାକୁ ଦେଲେ ।

## ଏକ୍‌ସରେ ଫଟରେ ଭୁଲ

ଏହାପରେ ଅନେକ ଦିନ ବିତିଯାଇଛି । ଯେଉଁ ଡାକ୍ତରଖାନା ତାଙ୍କୁ ପହିଲୁ ଚିକିତ୍ସା କରିଥିଲା, ସେଠୁ ଖଣ୍ଡିଏ ଚିଠି ଆସିଲା । ସେଥିରେ ଲେଖା ହୋଇଛି ଯେ, ତାଙ୍କ ଆଘାତ ଉପୁଙ୍କର ଧରଣର । ତାଙ୍କ ଏକ୍‌ସରେ ଫଟୋ

ଦେଖିବାରେ ଭୁଲ ହୋଇଛି । ସେ ଆଉଥରେ ପରୀକ୍ଷା ପାଇଁ ଯା'ନ୍ତି । ଡାକ୍ତରଙ୍କ ପରାମର୍ଶ ଅନୁସାରେ ସେ ଆଉ ଥରେ ଗଲେ । ପୁନରାୟ ନୂଆ ପରୀକ୍ଷା ହେଲା । ଯାହା ଜଣା ପଡ଼ିଲା, ସେଥିରେ ସେ କେହି ବିଚଳିତ ହୋଇପଡ଼ିବ । ମସ୍ତିଷ୍କରେ ଭୟଙ୍କର ଆଘାତ—ଯେ କୌଣସି ମୁହୂର୍ତ୍ତରେ ଚେତନା ଚାଲିଯାଇ ପାରେ । ଗୁଡ଼ିଏ ପଞ୍ଜରାହାଡ଼ ଭାଙ୍ଗିଯାଇଛି । ପିଠି ମଚକି ଯାଇଛି । ବାମ ପାଖ କଟିରେ ରକ୍ତ ଜମାଟ ବାନ୍ଧି ଫୁଲିଯାଇଛି । ଏସବୁ ଶୁଣିଲେ ମଧ୍ୟ ରବିନସନ୍ ବ୍ୟଥିତ ହେଲେ ନାହିଁ । ଘରକୁ ଯାଇ ଧୈର୍ଯ୍ୟର ସହିତ ବିଶ୍ରାମ ନେଲେ । ଦିନେ ଭଲ ହୋଇ ପୁଣି ପୂର୍ବ ପରି କାମଦାମ କରିପାରିବେ ବୋଲି କେବଳ ଆଶା କରି ରହିଲେ ।

## କଣେଇ ଡୋଳା

କିନ୍ତୁ ଦୁଃଖର କଥା, ଦିନକୁ ଦିନ ତାଙ୍କ ସ୍ୱାସ୍ଥ୍ୟ ଅଧିକ ଖରାପ ହେବାକୁ ଲାଗିଲା । ଆଖିକୁ ଭଲ ଦିଶିଲା ନାହିଁ । ଏପରିକି ଦିନେ ସେ ଘୂରି ଘୂରି ଘରେ ଆସି ପହଞ୍ଚିଲେ । ଟୋପିଟାପରେ ଥରୁଥାନ୍ତି । କାତରରେ କହିଲେ, "ଡୋରିସ, ମୁଁ ନିଶ୍ଚୟ ଅନ୍ଧ ହୋଇଯିବି । ମୋତେ ଏବେ ମିନିଟିଏ ପାଇଁ ଏ ଘରଟା ବି ଦେଖାଗଲା ନାହିଁ ।"

ଚକ୍ଷୁ ବିଶାରଦ ଡାକ୍ତର ଆଲବର୍ଟ ମୋଲ୍‌ଟେନ୍ ପରେ ପରୀକ୍ଷା କରି ଠିକ୍ ସେଇ ମତ ଦେଲେ । କହିଲେ, "ଅଳ୍ପ କେତେମାସ ମଧ୍ୟରେ ରବିନ୍‌ସନ୍ ପୂରାପୂରି ଅନ୍ଧ ହୋଇଯିବେ । ଏହା ତାଙ୍କ ମସ୍ତିଷ୍କ ଆଘାତର କୁଫଳ ।" ଟିକିଏ ବି ବିଚଳିତ ନ ହୋଇ ସେ ଏହି ଦୁଃସମ୍ବାଦ ଶୁଣିଲେ । ଅନ୍ଧ ହେଲେ କ'ଣ ସବୁ କରିବାକୁ ହେବ ସେ ତା'ର ଯୋଗାଡ଼ କଲେ । ଘରକୁ ଫେରି ଅନ୍ଧମାନଙ୍କର ବ୍ରେଲ ଅକ୍ଷର ସବୁ ମଗାଇଲେ । ଆଙ୍ଗୁଠିରେ ଠଉରେଇ ଠଉରେଇ ସେସବୁକୁ ଚିହ୍ନି ଲାଗିଲେ । ପ୍ରକୃତରେ କିଛି ଦିନପରେ ତାଙ୍କୁ ଆଉ କିଛି ଦିଶିଲା ନାହିଁ । ସେ କେବଳ ଆଖିରେ ଆଲୁଅ ଓ ଅନ୍ଧାର ବାରି ପାରିଲେ । ସେତେବେଳକୁ ଦୁର୍ଘଟଣା ଘଟିବାର ୧୧ ମାସ ହୋଇ ଯାଇଥିଲା । ଆସ୍ତେ ଆସ୍ତେ ତାଙ୍କ ଉଜ୍ଜ୍ୱଳ ନୀଳଡୋଳା ଦୁଇଟି ଟିକିଏ

ବ ହଲଚଲ ହେଲ ନାହିଁ । ସେଗୁଡ଼ିକ କଣ୍ଢେଇର ଡୋଳାପରି ଗୋଟିଏ ଦିଗକୁ ଅନେଇ ସ୍ଥିର ହୋଇ ରହିଲା ।

## ଗୁରୁଆଡ଼ ଅନ୍ଧାର ଓ ନୀରବ

ଏତିକରେ ତାଙ୍କ ଦୁର୍ଦ୍ଦଶା ସରିଲା ନାହିଁ । ତାଙ୍କ ଡାହାଣ ହାତଟି ମଧ୍ୟ ଅଚଳ ହୋଇଗଲା । ଏପରିକି ବ୍ରେଲ ଅକ୍ଷର ଉପରେ ସେ ଆଙ୍ଗୁଠି ଚଳେଇ ପାରିଲେ ନାହିଁ । ଏଣିକି ଅକ୍ଷର ପଢ଼ିବା ପାଇଁ ସେ ବାଁ ହାତ ବ୍ୟବହାର କଲେ । ମୁଣ୍ଡବିନ୍ଧା ଗୁରୁଆଡ଼ୁ ତାଙ୍କୁ ଧରିଲା । ସତେ ଯେପରି ତାଙ୍କ ମୁଣ୍ଡ ଚାରିକଡ଼େ ଗୋଟିଏ ଲୁହା ଗୁମୁଆଣୀ ଲାଗିଛି । କାନ ବି ବଧିର ହେଲା । ଏଣିକି ସ୍ତ୍ରୀ ଡୋରିସଙ୍କୁ ସବୁକଥା ଚିତ୍କାର କରି କହିବାକୁ ପଡ଼ିଲା । ତଥାପି ସେ ଭଲ କରି ଶୁଣି ପାରିଲେ ନାହିଁ । କାନରେ ଶୁଣିବା ଯନ୍ତ୍ର ଲଗେଇବାକୁ ହେଲା । ଆସ୍ତେ ଆସ୍ତେ ତାଙ୍କ ହାତଗୋଡ଼ ବାନ୍ଧିହୋଇ ପଡ଼ିଲା । ଆଗରୁ ସେ ସପ୍ତାହକୁ ସତୁରି ଘଣ୍ଟା ପରିଶ୍ରମ କରୁଥିଲେ, ଏଣେ ତେଣେ ଫୁର୍ତ୍ତିରେ ଧାଁଧପଡ଼ କରୁଥିଲେ; ତାହା ଆଉ ସମ୍ଭବ ହେଲା ନାହିଁ । ବର୍ତ୍ତମାନ ତାଙ୍କ ପାଇଁ ଗୁରୁଆଡ଼ ଅନ୍ଧାର ଓ ନୀରବ ହୋଇଗଲା ।

## ସ୍ମୃତି ହିଁ ସମ୍ବଳ

ଘରେ ବସି ବସି ଚଉମାଡ଼ିଲା ! ପାଖ ଚର୍ଚ୍ଚକୁ ଏଣିକି ନିୟମିତ ଯା'ଆସ କଲେ । ତାଙ୍କୁ ଯେ ଘର ଭିତରେ ଅଟକି ରହି ଅଣ୍ଡାଳି ହେବାକୁ ପଡ଼ିବ, ତାହା ସେ ଜାଣି ଜାଣି ଭୁଲିଗଲେ । ଯାହା ତାଙ୍କ ପାଇଁ ନିର୍ଦ୍ଦିଷ୍ଟ ହୋଇଗଲା, ତାହା ପାଇଁ ଦୁଶ୍ଚିନ୍ତା କରି ଦହଗଞ୍ଜ ହେଲେ ଲଭ କ'ଣ ? ବର୍ତ୍ତମାନ ତାଙ୍କ ହୃଦୟ ଭିତରୁ ସ୍ୱତଃ ଏକପ୍ରଶାନ୍ତ ଅବସ୍ଥା ଜାତ ହେଲା ।

ଏଣିକି ଡୋରିସ ତାଙ୍କ ପାଇଁ ସବୁ କାମ କରିବେ, ତାହା ସେ ପସନ୍ଦ କଲେ ନାହିଁ । କେଉଁଠି କ'ଣ ଅଛି, ସେ ମନେ ପକାଇଲେ । ହାତ ମାରି, ଗନ୍ଧ ବାରି ଧୀରେ ଧୀରେ ପାଦ ପକାଇ ସେ ଚଳପ୍ରଚଳ ହେଲେ । ଚକ୍ଷୁ ଓ କର୍ଣ୍ଣ ଉପରୁ ଆସ୍ଥା ହରାଇ ସେ ନିରାଶ ହେଲେ ନାହିଁ । ତାଙ୍କର ସ୍ମୃତି ଓ ଅନୁଭୂତିକୁ ସମ୍ବଳ କରି ସେ ଦମ୍ଭ ଧରିଲେ । ଏକ କୌଶଳ ପାଞ୍ଚି ସେ ଅଣ୍ଟାରେ ଗୋଟିଏ ଦଉଡ଼ି ବାନ୍ଧିଲେ । ଦଉଡ଼ିର ଅନ୍ୟ ମୁଣ୍ଡକୁ ବଗିଚ୍ଚ

ମଝିରେ ଲୁହା ଖୁଣ୍ଟରେ ବାନ୍ଧଦେଲେ । ଖୁଣ୍ଟ ଚାରିକଡ଼େ ବୁଲି ବୁଲି ଖୁଣ୍ଟରେ ଦଉଡ଼ି ଗୁଡ଼େଇ ଦେଲେ । ତା'ପରେ ଘାସକଟା କଳ ଠେଲେଇ ଠେଲେଇ ସ୍ୱଚାଳିତ ଢଗରେ ଟାଣି ହୋଇ ଘୂରିଲେ । ଦଉଡ଼ି ଫିଟି ଫିଟି ଗଲା ଓ ସେ ଖୁଣ୍ଟ ଚାରିପଟରେ ଯନ୍ତ୍ରଟିକୁ ବୃତ୍ତାକାରରେ ଘୂରାଇ ବଗିଚାର ଘାସ କାଟିଲେ । ଏପରିକି ସିଡ଼ି ଚଢ଼ି ଛାତ ମଧ୍ୟ ମରାମତି କରି ପାରୁଥିଲେ ।

## ନୂଆ ସାଥି

ଆଗରୁ ଘରେ ଥିବା ଟର୍ଣ୍ଣେଡୋଙ୍କ ବିଷୟ ଚିନ୍ତା କରିବାକୁ ତାଙ୍କୁ ବେଳ ନଥିଲା । ଏବେ ବାହାରକୁ ଯାଇ ନ ପାରିବାରୁ ତାଙ୍କର ବହୁତ ବେଳ ବଳିଲା । ଗ୍ୟାରେଜରେ ବୁଲି ବୁଲି ସେ ସେମାନଙ୍କ ଖିଆ ପିଆ କଥା ବୁଝିଲେ । ପକ୍ଷୀମାନେବି ଜାଣି ପାରିଲେ ଯେ ଜଣେ ନିସ୍ସହ ଅନ୍ଧ ଲୋକ ହାତରେ ନିର୍ଭୟରେ ବସି ଖାଇବାକୁ ଆରମ୍ଭ କଲେ ।

ତାଙ୍କ ଦୁର୍ଘଟଣାର ବର୍ଷକପରେ ତାଙ୍କ ଘର ପାଖ ରାଜପଥରେ ଆଉ ଗୋଟିଏ ଦୁର୍ଘଟଣା ଘଟିଗଲା । ଏଥରକ ଗୋଟିଏ କୁକୁଡ଼ା ବୋଝେଇ ଟ୍ରକ ଓଲଟି ପଡ଼ିଥିଲା । ସେଇ ଦୁର୍ଘଟଣାରୁ ବର୍ତ୍ତିଯାଇ ଗୋଟିଏ ଛୁଆ ମୁର୍ଗୀ ରବିନ୍ସନଙ୍କ ଅଗଣା ଭିତରକୁ ଚାଲି ଆସିଲା । ପରଦିନ ସକାଳୁ ଡୋରିସ ସେଇ କୁକୁଡ଼ାଟିକୁ ଦେଖିଲେ । ସେତେବେଳକୁ ତା' ଗୋଡ଼ ଶୀତରେ ଜାଠି ହୋଇ ବଙ୍କା ହୋଇ ଯାଇଥିଲା । ସେମାନେ ତାକୁ ଘରକୁ ନେଇ ସେକାସେକ କଲେ । ଆରାମ ପାଇ ସେ ଖୁସିରେ ଟୁକ୍‌ଟୁକ ଶବ୍ଦ କଲା । ସେମାନେ ତାକୁ ଶ୍ରଦ୍ଧାରେ ନାଁ ଦେଲେ—ଟୁକ୍‌ଟୁକ୍ । ରବିନ୍ସନଙ୍କର ଅତି ପ୍ରିୟ ହୋଇ ଉଠିଲା । କାରଣ ତାଙ୍କପରି ଟୁକ୍‌ଟୁକ୍ ମଧ୍ୟ ଏକ ଭୟାବହ ଦୁର୍ଘଟଣାରୁ ବର୍ତ୍ତି ଯାଇଥିଲା । ଟୁକ୍‌ଟୁକ୍ ତା'ର ସେହି ଛୋଟା ଗୋଡ଼ରେ ଚାଲି ଚାଲି ଚାଲି ଶିଖିଲା ।

## ଈଶ୍ୱରଙ୍କୁ ଧନ୍ୟବାଦ

୧୯୭୫ ମସିହା ଶୀତଦିନ । ଘର ଅଗଣାରୁ ବରଫ ଓଳେଇ ସାରି ରବିନ୍ସନ ରାତିରେ ଖାଇ ଶୋଇଲେ । ରାତି ଅଧ ବେଳକୁ ତାଙ୍କ ଛାତିରେ

ଜଳାପୋଡ଼ା ଯନ୍ତ୍ରଣା ଆରମ୍ଭ ହେଲା । ତାହା ହୃତ୍‌ପିଣ୍ଡ ରୋଗର ଲକ୍ଷଣ । ସଙ୍ଗେ ସଙ୍ଗେ ତାଙ୍କୁ ଡାକ୍ତରଖାନାକୁ ନେଇ ମାସେକାଳ ଯତ୍ନ ଚିକିତ୍ସା କରାଗଲା । ସେମିତି ଯନ୍ତ୍ରଣାଗ୍ରସ୍ତ ହୋଇ ସେ ଘରକୁ ଫେରିଆସିଲେ । ଏଣିକି ଟିକିଏ କାମ କଲେ ତାଙ୍କ ବାହୁ ଓ ଗୁଣ୍ଡରେ ଅଶେଷ ଯନ୍ତ୍ରଣା ହେଲା । ଏପରିକି ମାଟିତଳ କୋଠରୀର ପାହାଚ ଓହ୍ଲେଇବାକୁ ତାଙ୍କୁ କଷ୍ଟ ହେଲା । ଯନ୍ତ୍ରଣା ଲାଘବ ପାଇଁ ତାଙ୍କୁ ବାରବାର ବଟିକା ଗିଳିବାକୁ ପଡିଲା । ତଥାପି ରବିନ୍‌ସନ ତାଙ୍କ ନିତ୍ୟକର୍ମ ବନ୍ଦକଲେ ନାହିଁ । ବଗିଚାରେ କାମ କରୁଥିଲେ, ରେଡ଼ିଓ ଶୁଣୁଥିଲେ ଓ ଡୋରିସ୍‌ଙ୍କ ସଙ୍ଗେ ସହରକୁ ବୁଲି ଯାଉଥିଲେ । ପ୍ରତି ରାତିରେ ଶୋଇବା ପୂର୍ବରୁ ଘର ଅଗଣାରେ ଈଶ୍ୱରଙ୍କୁ ପ୍ରାର୍ଥନା କରୁଥିଲେ ଓ ଆଣ୍ଠୁ ପାତି କହୁଥିଲେ, "ହେ ଈଶ୍ୱର ମୁଁ ଏତେ ଦିନେ ଅନୁଭବ କଲି ଯେ ପ୍ରତିଦିନ ଆମ ଚାରିପଟେ କେତେ ଆଶ୍ଚର୍ଯ୍ୟଜନକ ଘଟଣା ଘଟିଯାଉଛି ମୁଁ ଏକ ଚଞ୍ଚଳ କର୍ମମୁଖର ଜୀବନରେ ଅଭ୍ୟସ୍ତ ହୋଇଥିଲି । ଏବେ ସେଇ ଜୀବନର ଗତିଧାରା ମନ୍ଥର ହୋଇ ପଡ଼ିଛି । ତେଣୁ ମୋ ଜୀବନକୁ ଉପଭୋଗ କରିବାକୁ ମୁଁ ବେଶୀ ସମୟ ପାଉଛି । ହେ ଈଶ୍ୱର ! ସେଥିପାଇଁ ମୁଁ ଆପଣଙ୍କୁ ଧନ୍ୟବାଦ ଜଣାଉଛି ।"

## ବଜ୍ରାଘାତ

ଏ ଗପର ଅନ୍ୟ ଏକ ଅଧ୍ୟାୟ ଆରମ୍ଭ ହେଲା । ୧୯୮୦ ଜୁନ ୪ ତାରିଖ ଅପରାହ୍ନ ୩।୩୦ । ଗ୍ୟାରେଜରେ ରବିନସନ ବୁଲୁଚାଲି କରୁଥିଲେ ହଠାତ୍ ଘଡ଼ଘଡ଼ ଶବ୍ଦ ହୋଇ ବୃଷ୍ଟି ଆରମ୍ଭ ହୋଇଗଲା । ତାଙ୍କ ବେତବାଡ଼ିରେ ଠାଉରେଇ ସେ ଗ୍ୟାରେଜ କାନ୍ଥ କଡ଼କୁ ଗଲେ ଓ ତାଙ୍କ ପ୍ରିୟ ଟିକ୍‌ଟିକ୍‌କୁ ଡାକିବାକୁ ଲାଗିଲେ । ବାହାରେ ଝଡ଼ । ଟିକ୍‌ଟିକ୍ ପାଇଁ ମନ ବ୍ୟସ୍ତ । ଅଧା ଭିଜା ସେ ପାଖ ଗଛ ମୂଳେ ଟିକ୍‌ଟିକର ଶବ୍ଦ ଠାଉରେଇବା ପାଇଁ କାନ ପାତିଥିଲେ । ହଠାତ୍ ଏକ ଚାବୁକ ମାଡ଼ର ଚଡ଼ଚଡ଼ ଶବ୍ଦ; ସେଇ ଗଛ ଉପରେ ବଜ୍ରାଘାତ ହେଲା । ବିଦ୍ୟୁତ୍ ଚାର୍ଜ ଚାରିଆଡ଼େ ଖଇ ଫୁଟିଲା ପରି ବିଛୁଡ଼ି ହୋଇ ପଡ଼ିଲା । ରବିନସନ ଏସବୁ ଜାଣିବା ପୂର୍ବରୁ ଚିତ୍‌ପଟାଙ୍କ ହୋଇ ତଳେ ପଡ଼ିଗଲେ ।

ବୋଧହୁଏ ୨୦ ମିନିଟ୍ ପରେ ତାଙ୍କ ଚେତା ଫେରି ଆସିଲା । ଧୂଷୁରି ଧୂଷୁରି ସେ ପାଖ ପଡ଼ୋଶୀ ଘର ଭିତରକୁ ଗଲେ; ପିଇବାକୁ ମୁନ୍ଦାଏ ପାଣି ମାଗିଲେ । ସେତେବେଳେ ଥରି ଥରି ସେ କହୁଥାନ୍ତି, "ମୋ ଉପରେ ବୋଧହୁଏ ବଜ୍ର ପଡ଼ିଗଲା ।" ସେମିତି ଘୋଷେଇ ଘୋଷେଇ ଘରକୁ ଆସିଲେ । ଘରେ ପହଞ୍ଚି ଗିଲାସ ଗିଲାସ ପାଣି ପିଇଗଲେ । ତା'ପରେ ନିଘୋଡ଼ ନିଦରେ ଶୋଇପଡ଼ିଲେ ।

## ଆକସ୍ମିକ ଆନନ୍ଦ

ଘଣ୍ଟାକ ପରେ ବିଛଣାରୁ ଉଠି ପୁଣି ପାଣି ପିଇଲେ । ଯାହା ଯାହା ଘଟିଗଲା, ସେ ଡୋରିସ୍‌ଙ୍କ ଆଗରେ କହିଗଲେ । ତା'ପରେ ଦୁଇ ଲିଟର କ୍ଷୀର ପିଇ ସୋଫା ଉପରେ ଜାକିଜୁକି ହୋଇ ପଡ଼ି ରହିଲେ । ଡୋରିସ ରୋଷେଇ ଘରକୁ ରନ୍ଧାରନ୍ଧି କରିବାକୁ ଗଲେ । କିଛି ସମୟ ପରେ । ରବିନ୍‌ସନ ମୁଣ୍ଡ ଟେକି କାନ୍ଥ ଆଡ଼କୁ ଅନେଇଲେ । ତାଙ୍କ ନାତିମାନେ ଯେଉଁ ଲେଖା-ଫଳକ ଉପହାର ଦେଇଥିଲେ, ତାହା ସେହି କାନ୍ଥରେ ଝୁଲୁଥିଲା । ତାକୁ ଚାହିଁ ଚାହିଁ ସେ ଅଟେଇ ଅଟେଇ ପଢ଼ିବାକୁ ଲାଗିଲେ—"ସବୁ ଆଡ଼ ଈଶ୍ୱର ସମ୍ଭାଳି ପାରିବେ ନାହିଁ । ତେଣୁ ଦେଖାଚାହାଁ ପାଇଁ ସେ ସଂସାରକୁ ଗୁଡ଼ାଏ ବୁଢ଼ାବାପା ପଠାଇଛନ୍ତି ।"

ରୋଷେଇ ଘରୁ ଏହା ଶୁଣି ଡୋରିସ ବଡ଼ ପାଟିରେ କହିଲେ, "କ'ଣ କହିଲ ?" ରବିନ୍‌ସନ ଚିତ୍କାର କରି ଉଠିଲେ "ମୁଁ ଦେଖି ପାରୁଛି, ଡୋରିସ ବୈଠକ ଘରକୁ ଧାଇଁ ଆସିଲେ । ପରୀକ୍ଷା କରିବା ପାଇଁ ପଚାରିଲେ, "କହିଲ କାନ୍ଥ ଘଣ୍ଟାରେ ସମୟ କେତେ ?" ରବିନସନ ଚିତ୍କାର କରି ଉଠିଲେ "ପାଞ୍ଚଟା । ଡୋରିସ, ମୋ ଦୃଷ୍ଟିଶକ୍ତି ମୁଁ ଫେରି ପାଇଛି !"

ଡୋରିସ ଆଉ ଗୋଟିଏ କଥା ମଧ୍ୟ ଲକ୍ଷ୍ୟକଲେ । ଆନନ୍ଦରେ ଚିତ୍କାର କରି ସେ ପଚାରିଲେ, "କାନରୁ ତମ ଶୁଣିବା ଯନ୍ତ୍ର କୁଆଡ଼େ ଗଲା ?" ରବିନ୍‌ସନ କାନ ଅଣ୍ଡାଳିଲେ । କେତେବେଳୁ ତାହା କୁଆଡ଼େ ଗଳି ପଡ଼ିଛି । ରବିନ୍‌ସନ କୃତକୃତ୍ୟ ହୋଇ କହି ଉଠିଲେ "ହେ କରୁଣାମୟ, ମୁଁ ଏକାବେଳକେ ଶୁଣି ବି ପାରୁଛି ।"

ଏ ଆକସ୍ମିକ ଆନନ୍ଦରେ ୭୨ ବର୍ଷର ବୃଦ୍ଧ କ୍ଳାନ୍ତହୋଇ ପଡ଼ିଲେ । ସବୁ ଅଙ୍ଗରେ ସେ ଯନ୍ତ୍ରଣା ଅନୁଭବ କଲେ । ବଜ୍ରପାତରେ ତାଙ୍କର କିଛି କ'ଣ ହୋଇଗଲା କି ? ଡୋରିସ୍‌ଙ୍କ ମନରେ ଆଶଙ୍କା । ଡାକ୍ତରଙ୍କୁ ସେ ସଙ୍ଗେ ସଙ୍ଗେ ଫୋନ କଲେ । ଡାକ୍ତର ପରାମର୍ଶ ଦେଲେ, "ନିହାତି ଦରକାର ପଡ଼ିଲେ, ପ୍ରାଥମିକ ଚିକିତ୍ସାଳୟକୁ ନେଇ ଯାଅ । କୌଣସିମତେ ରାତିଟା ଅପେକ୍ଷା କରି କାଲି ସକାଳୁ ଡାକ୍ତରଖାନାକୁ ଆଣିବ ।" ଡୋରିସ ରାତି ସାରା ଉଜାଗର ରହି ସ୍ୱାମୀଙ୍କର ନିଃଶ୍ୱାସ ପ୍ରଶ୍ୱାସ ଉପରେ ନଜର ରଖିଥାନ୍ତି ।

ପରଦିନ ଡାକ୍ତରୀ ପରୀକ୍ଷାରୁ ଜଣା ପଡ଼ିଲା, ରବିନ୍‌ସନ ଭଲ ଅଛନ୍ତି । ଡାକ୍ତର ମୋଲଟନ ତାଙ୍କ ଆଖିକୁ ଖୁବ୍ ଭଲଭାବେ ପରୀକ୍ଷା କରି କହିଲେ, "କ'ଣ ହେଲା ମୁଁ ବୁଝିହେଇ ପାରିବ ନାହିଁ । କିନ୍ତୁ ସେ ଆଗରୁ ଆଦୌ ଦେଖି ପାରୁ ନଥିଲେ ବୋଲି ମୁଁ ପରୀକ୍ଷା କରି ନିଶ୍ଚିତ ଭାବେ ଜାଣିଥିଲି । ଏହା ଅସମ୍ଭବ ସତ; କିନ୍ତୁ ଏବେ ସେ ପରିଷ୍କାର ଦେଖି ପାରୁଛନ୍ତି ।"

ରବିନ୍‌ସନ ଖୁସି ହୋଇ ଜର୍ଜିଆରେ ରହୁଥିବା ତାଙ୍କ ପୁଅ ଓ ନାତିମାନଙ୍କ ପାଖକୁ ଗଲେ । ସେଠି ପହଞ୍ଚିଲା ବେଳକୁ ତାଙ୍କର ଆଉ ଗୋଟିଏ ନୂଆ ଅନୁଭୂତି ହେଲା । ତାଙ୍କ ଡାହାଣ ହାତ ପୂରା ଭଲ ହୋଇ ଯାଇଥିଲା । ଆସ୍ତେ ଆସ୍ତେ ତାଙ୍କ ବାହୁରୁ ପକ୍ଷାଘାତ ଦୂର ହୋଇ ସ୍ପର୍ଶ ଅନୁଭୂତି ଫେରି ଆସୁଥିଲା ତାଙ୍କ ପୁଅଙ୍କ ବଗିଚାରେ ସେ ଘାସକଟା ଯନ୍ତ୍ର ଚଳାଇ କହିଲେ, "ଆଃ, ମୋତେ ଆଦୌ କଷ୍ଟ ହେଉନାହିଁ । ବଜ୍ର ପଡ଼ିଲା ବେଳେ ସେ ତାଙ୍କ ହୃତ୍‌ପିଣ୍ଡ ଯନ୍ତ୍ରଣା ପାଇଁ ଆଦୌ ବଟିକା ଖାଇ ନ ଥିଲେ । ତାଙ୍କ ମୁଣ୍ଡ ଭିତରେ ସେଇ ରୂପା କଷ୍ଟ ମଧ୍ୟ ନ ଥିଲା । ତାଙ୍କ ଡାହାଣ ଗୋଡ଼ର ଫୁଲିଲା ଫୁଲିଲା ଶିରାଗୁଡ଼ିକ ମଧ୍ୟ ସ୍ୱାଭାବିକ ହୋଇ ଆସିଥିଲା ।

## କରୁଣାମୟଙ୍କ କରୁଣା

ବଜ୍ରପାତରେ ତାଙ୍କର ସବୁ ଯନ୍ତ୍ରଣା କିପରି ଉଭେଇ ଗଲା, କୌଣସି ଡାକ୍ତର ବୁଝିହେଇ ପାରିଲେ ନାହିଁ । ପ୍ରକୃତରେ କ'ଣ ତାଙ୍କ ମସ୍ତିଷ୍କ ଆଘାତ

ତାଙ୍କୁ ଅନ୍ଧ ଓ ବଧିର କରିଥିଲା ? ନା, ତ୍ରକ ଦୁର୍ଘଟଣାଜନିତ ଏକ ମାନସିକ ପ୍ରତିକ୍ରିୟାରେ ସେ ଏପରି ବିକୃତ ହୋଇ ଯାଇଥିଲେ ? ସତରେ କ'ଣ ବଜ୍ରପାତ ତାଙ୍କୁ ମୁଣ୍ଡରୁ ପାଦପର୍ଯ୍ୟନ୍ତ ଆରୋଗ୍ୟ କରିଦେଲା ? ଏକଥା ଶୁଣି ଅନେକେ ଏଣୁ ତେଣୁ କେତେ କ'ଣ ଭାବିବେ; କିନ୍ତୁ ଏଡ଼ୱିନ୍ ଓ ତାଙ୍କ ପରିବାର ଏ ବିଷୟରେ ଆଦୌ ମୁଣ୍ଡ ଖେଳାନ୍ତି ନାହିଁ । ଖୁବ୍ ସହଜରେ ସେମାନେ ଧରି ନେଇଛନ୍ତି ଯେ, କରୁଣାମୟଙ୍କ ଅପାର କରୁଣା ଛଡ଼ା ଏହା ଅନ୍ୟ କିଛି ନୁହେଁ ।

## ଟିକିଏ ଆଶା

ରବିନ୍ସନ ରାତାରାତି ବିଖ୍ୟାତ ହୋଇ ଗଲେ । ଦୁରଦର୍ଶନ କେନ୍ଦ୍ରରୁ ଡାକରା ପଡ଼ିଲା; ସ୍କୁଲ ଛାତ୍ରମାନେ ତାଙ୍କ ମୁହଁରୁ କିଛି ଶୁଣିବାକୁ କୌତୁହଳୀ ହେଲେ । ଗୁରିଆଡ଼େ ବୁଲି ବୁଲି ସେ ତାଙ୍କ ଭାଷଣରେ ଅନ୍ଧ ହେବାର ଅନୁଭୂତି କହୁଥିଲେ । ତାଙ୍କ ବକ୍ତୃତାର ସାରାଂଶ ହେଲା, "ମୋ ସାରା ଜୀବନରେ ଆଖି ଥାଇ ମୁଁ ଯାହା ଅନୁଭବ କରି ନ ଥିଲି, ଅନ୍ଧ ହୋଇ ଅଳ୍ପ କେଇ ମାସରେ ତା'ଠାରୁ ଅଧିକ ଅନୁଭବ କଲି । ଅନ୍ଧ ହେଲେ ଅନ୍ୟ ଅନ୍ତରର ଦରଦ ପ୍ରକୃତ ଅନୁଭବ କରିହୁଏ । ଏବେ ମୁଁ ପ୍ରକୃତିର ବୈଚିତ୍ର୍ୟ ଅଧିକ ଅନୁଭବ କରୁଛି । ବୃକ୍ଷ ଲତାର ପତ୍ର ଗହଳରେ ଜ୍ୟୋତ୍ସ୍ନା ଚୁଣି ହୋଇ ଆସୁଛି, ବଗିଚାରେ ଫୁଲ ସବୁ ହସୁଛନ୍ତି, ଝିଁବାକୁଆ-ମାନେ ଖୁସିରେ ତାଙ୍କ ଖୋସା ବୁଣି ଲାଗିଛନ୍ତି । ମନେ ହେଉଛି, ଏସବୁ ସେପରି ଆଗରୁ ଘଟୁ ନଥିଲା । ସବୁଠାରୁ ବଡ଼ କଥା ହେଲା, ସେହି ଦୁର୍ଦ୍ଦିନରେ ମୁଁ ଥରେ ହେଲେ ବିଚଳିତ ହୋଇ ଆଶା ହରେଇ ନ ଥିଲି । ସେତିକ ହରେଇ ଥିଲେ ମୁଁ ଏ ସୁଯୋଗ ପାଇ ନ ଥାନ୍ତି । ମୋ ଜୀବନରେ ଯାହା ଘଟିଲା, ତାହା ଅନ୍ୟମାନଙ୍କୁ ଆଶା ନ ହରେଇବାକୁ ସାହସ ଦେବ । ପ୍ରକୃତରେ ଟିକିଏ ଆଶା ମଣିଷକୁ ଦମ୍ଭ ଦିଏ ଓ ବଞ୍ଚେଇ ରଖେ ।" ତାଙ୍କ ଜୀବନର ମହତ୍ ବାଣୀକୁ ସେ ତାଙ୍କ ମଟର ଗାଡ଼ିରେ ଲଗାଇ ବୁଲୁଛନ୍ତି । ତାହା ହେଲା— ସେହି ଆଶ୍ଚର୍ଯ୍ୟ ଘଟଣା ପାଇଁ ପରମେଶ୍ୱରଙ୍କୁ ଧନ୍ୟବାଦ ।

●